# ପାଦତଳର ପୃଥିବୀ

(ଗଳ୍ପ ସଂକଳନ)

ଗାଳ୍ପିକ -. ଡାକ୍ତର ରାଜ କିଶୋର ପଣ୍ଡା
ଚକ୍ଷୁରୋଗ ବିଶେଷଜ୍ଞ
କଲେଜରୋଡ୍, ଯାଜପୁର ଟାଉନ୍
ଯାଜପୁର - ୭୫୫ ୦୦୧

ପ୍ରକାଶକ - ସାହିତ୍ୟ ବାର୍ତ୍ତା ପ୍ରକାଶନୀ
ଗୋବିନ୍ଦପୁର, ଏରବାଙ୍କ, ଦ୍ବିଜନପୁର
ଯାଜପୁର - ୭୫୫ ୦୧୭

ପ୍ରଚ୍ଛଦ - ଶ୍ରୀ ଶରତ ଚନ୍ଦ୍ର ମୁଦୁଲି
ଯାଜପୁର ଟାଉନ

ଡି.ଟି.ପି. - ମଲ୍ଟିଟେକ୍ କମ୍ପ୍ୟୁଟର,
ମେଡ଼ିକାଲ ରୋଡ୍, ଯାଜପୁର

ମୁଦ୍ରଣ - ପପୁଲାର କମ୍ୟୁନିକେସନ୍
୩୪୮, ଲୁଇସ୍‌ରୋଡ୍, ଭୁବନେଶ୍ୱର - ୧୪

ପ୍ରଥମ ସଂସ୍କରଣ - ମାର୍ଚ୍ଚ, ୨୦୦୨

ମୂଲ୍ୟ - ଟ. ୭୦/- (ସତୁରୀ ଟଙ୍କା)

# ଉତ୍ସର୍ଗ



ମୋ' ଜୀବନ ପ୍ରଭାତର ସକଳ ପ୍ରେରଣାର ଉତ୍ସ,

ମୋ' ଜୀବନ ମାର୍ଗର ଅନନ୍ତ ଦିଗ୍‌ଦର୍ଶକ,

ମୋ' ପରମ ପୂଜ୍ୟ ସ୍ୱର୍ଗତ ପିତୃଦେବଙ୍କ

ଅମର ଆତ୍ମା ଉଦ୍ଦେଶ୍ୟରେ

ମୋର ପ୍ରଥମ ସୃଷ୍ଟି

**'ପାଦ ତଳର ପୃଥିବୀ'**

ଉତ୍ସର୍ଗୀକୃତ ।

- ଗାନ୍ଧିକ

# ଅଭିମତ

ଗଳ୍ପାତ୍ ପରତରଂ ନହି । ସାହିତ୍ୟର ଯେତେ ବିଭାଗ ରହିଛି - କବିତା, କାବ୍ୟ , ନାଟକ , ଉପନ୍ୟାସ ଇତ୍ୟାଦି ଭିତରେ ଗଳ୍ପ ହେଉଛି ସର୍ବ କନିଷ୍ଠ । କନିଷ୍ଠ ସତ, କିନ୍ତୁ ବହୁ ବଳିଷ୍ଠ । ମଣିଷର ଜୀବନ ହେଉଛି କାହାଣୀର ଅସୁମାରୀ ଗନ୍ତାଘର । ରବି ଠାକୁରଙ୍କ ଭାଷାରେ, 'ନଦୀ ଯେପରି ଜଳସ୍ରୋତର ଅଖଣ୍ଡ ଧାରା, ମଣିଷ ସେପରି କାହାଣୀର ଅବିଚ୍ଛିନ୍ନ ଅଙ୍ଗ' । କାହାଣୀ ମଣିଷ ବୁନିଆଦ୍‌ର ବାଣୀ ଭାସ୍ୟ, ମଣିଷର ଆତ୍ମ ପରିଚୟ, ତା' ସ୍ୱରୂପର ଚିତ୍ର, ତା' ଜୀବନର ଶିଳ୍ପକର୍ମ । କଥ୍ୟ ଧର୍ମୀ, ଉଦ୍ଦେଶ୍ୟ ଧର୍ମୀ, ନୀତି ଉପଦେଶ ଭିତ୍ତିକ ଗତାନୁଗତ କାହାଣୀର ପରମ୍ପରାକୁ ଆଜିର ଗଳ୍ପ ପରିହାର କରିଛି । ବାହାରର ଆଟୋପକୁ ଟିପି ଦେଇ ଗାଳ୍ପିକର କଲମ ଆଜି ତୁଷ୍ଟ ନୁହେଁ । ଭିତରକୁ ବିବସ୍ତ୍ର କରି ସେଠାକାର ଇଲାକାରେ ଛାଇ ହେଇଥିବା ଛେଉ ଚିହ୍ନକୁ ଚିତ୍ରିବା ପାଇଁ ଆଜିର ଗାଳ୍ପିକ ତତ୍‌ପର ହୋଇ ପଡିଛି । ଆଜିର ଗଳ୍ପ ଜୀବନ ପ୍ରତି ମମତ୍ୱ ବୋଧର ଗଳ୍ପ, ଆଜିର ଗଳ୍ପ ଜୀବନ ଜିଜ୍ଞାସାର ଗଳ୍ପ ।

ଚକ୍ଷୁରୋଗ ବିଶେଷଜ୍ଞ ଡାକ୍ତର ରାଜକିଶୋର ପଣ୍ଡାଙ୍କୁ ତାଙ୍କର ଯାଜପୁରକୁ ଆସିବାଠାରୁ, ମୁଁ ଜାଣେ । ସେ କେବଳ ଜଣେ ସଫଳ ଅଭିନେତା ନୁହନ୍ତି, ଏକ ସଂସ୍କୃତି ସଚେତନ ବ୍ୟକ୍ତି । ଏ ଅଞ୍ଚଳର ସମସ୍ତ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ସମ୍ପୃକ୍ତ । ଶ୍ରୀ.ପଣ୍ଡାଙ୍କର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ କେତୋଟି ଗଳ୍ପ ମୁଁ ପଢିଛି । ଆଙ୍ଗିକରେ ଅଯଥା ଆବରଣର ଆଟୋପ ଓ ଆତ୍ମିକରେ ଭାରଗ୍ରସ୍ତ ଭାବ ଗୁଛନକୁ ଏଡାଇ ଦେଇ ଗଳ୍ପ କଥନ ଭଙ୍ଗୀରେ ଗଳ୍ପଟିଏ ପରଷିବା ହେଉଛି ଶ୍ରୀ ପଣ୍ଡାଙ୍କର ଗଳ୍ପ ରଚନାର ଏକ ବିଶେଷତ୍ୱ । ଲାସ୍ୟମୟୀ ଅଭିନେତ୍ରୀର ସଲୀଳ ନୟନ ଠାରୁ ଆରମ୍ଭ କରି ଶବ ବ୍ୟବଚ୍ଛେଦ ଗୃହରେ ସଢି ସଢି ଆସୁଥିବା ଉଲଗ୍ନ ନାରୀର ବନ୍ଦ ବିବଶ ଆଖିପତା ପର୍ଯ୍ୟନ୍ତ - କଂସେଇର ଛୁରୀହଲା ଆଗରେ ନିରୀହ ଛେଳିଟିର ବିକଳ ବୃତ୍ତାନ୍ତ ଠୁ ତାଟି ଘେରା ଗୁହାଳ ଭିତରେ ଋତୁମତୀ ଗାଈଟିର ଗର୍ଭଧାରଣ ଘଟଣା ଯାଏ - ବଡ ବ୍ୟାପ୍ତ ଶ୍ରୀ ପଣ୍ଡାଙ୍କର ବକ୍ତବ୍ୟର ପରିଧି । ଗଳ୍ପ ଶିଳ୍ପଶାଳାର ଜଣେ ନବାଗତ ଶିଳ୍ପୀ ଡାକ୍ତର ପଣ୍ଡା । ତାଙ୍କ କଲମ ମୂନରେ ବହୁ କୁଟିକମର ସମ୍ଭାବନା ରହିଛି । ତାଙ୍କ ଲେଖନୀ ଅଧିକରୁ ଅଧିକ ସକ୍ରିୟ ହେଉ, ଏହାହିଁ ମୋର କାମନା ।

ଅଚ୍ୟୁତାନନ୍ଦ ପତି

ନରହରିପୁର, ଯାଜପୁର

# ସୂଚୀପତ୍ର


| କ୍ର.ନଂ | ଗଳ୍ପ | ପୃଷ୍ଠା |
|---|---|---|
| ୧. | ପାଦତଳର ପୃଥିବୀ | ୧ |
| ୨. | ଘାସ ଫୁଲର ମୃତ୍ୟୁ | ୫ |
| ୩. | ନଖ ଦର୍ପଣ | ୧୩ |
| ୪. | କଂସେଇ | ୨୦ |
| ୫. | ପୁନଶ୍ଚ ପଶ୍ଚିମ | ୨୬ |
| ୬. | ମିଛ ଆଲୁଅ | ୨୯ |
| ୭. | ନୀଳ ନୟନା | ୩୩ |
| ୮. | ମୁଖା | ୩୭ |
| ୯. | ରାଜ ଯୋଟକ | ୪୨ |
| ୧୦. | ମଲା ଗଛର ଛାଇ | ୫୦ |
| ୧୧. | ଭଙ୍ଗା ବୀଣାର ସ୍ୱର | ୫୬ |
| ୧୨. | ଭସା ବାଦଲର ଛାଇ | ୬୩ |
| ୧୩. | କାଲୁ ମିଆଁ | ୭୦ |
| ୧୪. | ବିଦ୍‌ଗଧ ଫଗୁଣ | ୭୩ |
| ୧୫. | ଦଗ୍‌ଧ ମଧୁବନ | ୭୮ |
| ୧୬. | ଅପହଞ୍ଚ ଅନ୍ଧାର | ୮୨ |
| ୧୭. | ବାଘ ମୁଖା | ୮୯ |

# ମୁଖଶାଳା ......

ପାଠକୀୟ ଶ୍ରଦ୍ଧା ହିଁ ଲେଖକ ପାଇଁ ସକଳ ପ୍ରେରଣାର ଉତ୍ସ । ଶ୍ରଦ୍ଧାର ସେହି ପୂର୍ତ୍ତିକୁ ପାଥେୟ କରି ସେ ଆଗେଇ ଚାଲେ ଆଗକୁ ଆଗକୁ ପୁଣି କିଛି ନୂତନ ଶ୍ରଦ୍ଧା ପାଇବା ଆଶାରେ । ଯେଉଁମାନଙ୍କ ଶ୍ରଦ୍ଧା ଓ ପ୍ରେରଣା ବଳରେ ମୋ କଲମରୁ ପୃଷ୍ଠା ପରେ ପୃଷ୍ଠା ଗଳ୍ପର ଝର ଫିଟୁଥିଲା, ଯେଉଁମାନଙ୍କର ସଦିଚ୍ଛା ଓ ସହଯୋଗ ବଳରେ ଗଳ୍ପ ସଂକଳନଟିଏ ଆପଣମାନଙ୍କ ସମ୍ମୁଖରେ ବାଢ଼ି ଦେବାପାଇଁ ସକ୍ଷମ ହେଲି, ସେମାନଙ୍କ ନିକଟରେ ମୁଁ ଗଭୀର ଭାବେ କୃତଜ୍ଞ ।

ନିଜ ପାଇଁ ଲେଖିବା ଲେଖକର ଉଦ୍ଦେଶ୍ୟ ନୁହେଁ । ତା'ର ଲେଖାର ଚରିତ୍ର ଯଦି ସାଧାରଣ ମଣିଷର ଚରିତ୍ର ସହ ମିଶିଯାଏ, ଦୁହେଁ ଯଦି ଏକାତ୍ମ ହୋଇଯାନ୍ତି ତାହାହିଁ ଲେଖକପାଇଁ ଗୁରୁତ୍ୱପୂର୍ଣ୍ଣ ଘଟଣା ହୁଏ । ଯେଉଁ ଗଳ୍ପଟିକୁ ପାଠକରି ପାଠକ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତନ୍ମୟ ହୋଇରହେ, ଯାହା ପାଠକକୁ ଆମୋଦ ଦିଏ, ଯାହା ପାଠକ ମନରେ ଗଭୀର ଭାବରେ ପ୍ରଭାବ ପକାଏ, ତାହାକୁ ହିଁ ଉତ୍ତମାନର ଗଳ୍ପ କୁହାଯାଏ ଏବଂ ତାହାହିଁ ଗାଳ୍ପିକ ପାଇଁ ସଫଳ ସୃଷ୍ଟିର ନମୁନା ବହନ କରିଥାଏ । ଉକ୍ତ ସଂକଳନରେ ମୋର ସୃଷ୍ଟି ସଫଳ ହୋଇଛି କି ନାହିଁ ତାହା ପାଠକ ବନ୍ଧୁମାନେ ହିଁ କହିବେ । ଡାକ୍ତର ଜୀବନରେ କ୍ଳାନ୍ତି ମେଣ୍ଟିଯିବା ପରେ ବଳକା ସମୟରେ ଭାରାକ୍ରାନ୍ତ ମସ୍ତିଷ ନେଇ ସାହିତ୍ୟ ସାଧନା କରିବା ବିଶେଷ କରି ଗଳ୍ପ ସୃଷ୍ଟିକରିବା ଏକ ଦୂରୁହ ବ୍ୟାପାର । ଏ ସଂକଳନରେ ସ୍ଥାନିତ ଗଳ୍ପଗୁଡ଼ିକୁ ବାସ୍ତବ ଧର୍ମୀ ତଥା ନିଛକ ଅନୁଭୂତି ଅନୁସୃତ କରିବା ପାଇଁ ଚେଷ୍ଟା କରାଯାଇଛି । ଗଳ୍ପଗୁଡ଼ିକ ଯଦି ପାଠକର ମନଛୁଆଁ ହୋଇପାରେ, ପାଠକ ମନରେ ଯଦି ଗାଳ୍ପିକପାଇଁ କିଛିଟା ଶ୍ରଦ୍ଧା ଓ ଅନୁରାଗ ଜାତ କରାଇପାରେ ତା'ହେଲେ ମୋର ସୃଷ୍ଟି ସଫଳ ହୋଇଛି ବୋଲି ଆଶ୍ୱସ୍ତ ହେବା ସଙ୍ଗେ ସଙ୍ଗେ ବିଜ୍ଞ ପାଠକମାନଙ୍କ ନିକଟରେ କୃତଜ୍ଞ ରହିବି ।

ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଗାଳ୍ପିକ ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ପତି ମହୋଦୟଙ୍କ ଶ୍ରଦ୍ଧା, ସହଯୋଗ, ସଦିଚ୍ଛା, ପରାମର୍ଶ ଓ ପ୍ରେରଣା ଉକ୍ତ ସଂକଳନ ପାଇଁ ସହାୟକ ହୋଇଥିବାରୁ ତାଙ୍କ ନିକଟରେ ମୁଁ ବିଶେଷ ଭାବରେ ଋଣୀ ।

ସାହିତ୍ୟ ବାର୍ତ୍ତା ପ୍ରକାଶନୀର ମୁଖ୍ୟ ସାହିତ୍ୟାରଣ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ସାହାଣି ମହୋଦୟ ଉକ୍ତ ସଂକଳନର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ମୁଁ ତାଙ୍କ ନିକଟରେ ଗଭୀର ଭାବରେ କୃତଜ୍ଞ ।

ରାଜକିଶୋର ପଣ୍ଡା

(ରାଜ କିଶୋର ପଣ୍ଡା)

# ପାଦତଳର ପୃଥିବୀ

ଗୋଟାଏ ଅଚାନକ ଦୁମ୍ ଦୁମ୍ ଶବ୍ଦରେ ମାଳତୀ ଆଖିର ତରଳା ନିଦଟା ଚଟ୍‌କରି ଭାଙ୍ଗିଗଲା । ଆଖିଖୋଲି ଚାରି ଆଡ଼କୁ ଚାହିଁଲା ମାଳତୀ । ରାତି ପାହି ଆସୁଥିବାର ସମସ୍ତ ଲକ୍ଷଣ ସ୍ପଷ୍ଟ ଜଣା ପଡୁଥିଲେ ମଧ୍ୟ ଝାପ୍‌ସା ଅନ୍ଧାର କିଛିଟା ରହିଯାଇଥିଲା । ପାଖରେ ନିଘୋଡ଼ ନିଦରେ ଶୋଇ ରହିଥାଏ ସ୍ୱାମୀ ଚକରା । ସାରାଦିନ ଗଧ ଖଟଣି ଖଟି ଖଟି ରାତିରେ ଚକରା କୁମ୍ଭକର୍ଣ୍ଣ ପାଲଟି ଯାଏ । ଘର ଭିତରର ସବୁ ଜିନିଷପତ୍ର ଉପରେ ନଜର ବୁଲାଇ ଆଣିଲା ମାଳତୀ । ତା'ର ଟୁଙ୍ଗୀ ଘରର ଖୋଲା ଝରକା ଫାଙ୍କ ଦେଇ ସୁଲୁସୁଲିଆ ପବନ ଘର ଭିତରକୁ ପଶିଆସି ତା'ର ନୁଖୁରା କେଶକୁ ଫର୍‌ଫର୍ କରି ଉଡାଉ ଥାଏ । ଗତ ରାତିର କ୍ଳାନ୍ତି ମେଣ୍ଟି ନଥିବାରୁ ଆଖିପତା ତା'ର ପଡିପଡି ଆସିଲା । ପୁଣି ସେହି ଦୁମ୍ ଦୁମ୍ ଶବ୍ଦ । ଏଥର ଉଠି ବସିଗଲା ମାଳତୀ । କ'ଣ ଏ ଶବ୍ଦ ? ବାରମ୍ବାର କେଉଁଠାରୁ ଆସୁଛି ? ଅନୁମାନ କରିବାକୁ ଚେଷ୍ଟା କରୁଥିଲା ସେ । ତା' ଘରେ ଚୋର ପଶି ନାହିଁତ ? କିନ୍ତୁ ଚୋରକୁ କ'ଣ ଆଉ କାହାଘର ମିଳିଲା ନାହିଁ ? ତା' ଘରେ କ'ଣ ଅଛି ଯେ ଚୋର ନେଇ ପଳାଇବ ? ବାସନ କୁସନ କହିଲେତ କେତେଖଣ୍ଡ ଥାଳି, ବାଟି, ଗ୍ଲାସ, ଲୋଟା । ଲୁଗାପଟା କହିଲେ କେତେଖଣ୍ଡ ପୁରୁଣା ଦରସିଆଁ ଧୋତି, ଶାଢୀ । ଟଙ୍କା ପଇସା ସାଇତିବାକୁ ତା'ର ବା ସୁଯୋଗ କାହିଁ ? ଯାହାକିଛି ଖୁଚୁରା ଟଙ୍କା ପଇସା ସବୁତ ତା' ହାତ ବାକ୍‌ସରେ ପଶି ତା'ରି ଶୋଇବା ଘର ଭିତରେ ରହିଛି । କ'ଣ ଏଇସବୁ ନେବାପାଇଁ ଚୋର ତା'ଘରେ ପଶିବ ? ନାଁ, ଶବ୍ଦଟା ଅନ୍ୟକିଛି ହୋଇପାରେ । କଥାଟା ଠିକ୍ ଭାବରେ ନ ଜାଣି ଚକରାକୁ ଅଯଥା ନିଦରୁ ଉଠାଇବାକୁ ମଧ୍ୟ ଉଚିତ ମନେକଲା ନାହିଁ ମାଳତୀ । ଏଥର ନିଜର ଆଖି, କାନ, ମନ, ଧ୍ୟାନ ସବୁକିଛି ସତର୍କ ରଖି ସେ ବସି ରହିଲା । କିଛି ସମୟ ପରେ ପୁଣି ସେହି ଦୁମ୍ ଦୁମ୍ ଭୁସ୍ ଭୁସ୍ ଶବ୍ଦ । ମାଳତୀ ଏଥର ଠିକ୍ ଭାବରେ ଜାଣି ପାରିଲା ଯେ ଶବ୍ଦଟା ତା'ରି ଗୁହାଳ ଭିତରୁହିଁ ଆସୁଛି । ସେଇ ଶବ୍ଦ ଭିତରେ ସେ ଅନୁଭବ କଲା, ସତେ ଯେମିତି ତା' ଛାତି ଭିତରୁ ଭୁସ୍ ଭୁସ୍ ଅତଡା ଖସି ପଡୁଛି । ତା'ର ଅତି ଆଦରର ବଉଳର କ'ଣ କିଛି ହେଇ ଗଲାକି ? ଅନେକ ଅଶୁଭ ଚିନ୍ତା ତା' ମୁଣ୍ଡ ଭିତରେ ପଶି ମୁଣ୍ଡଟାକୁ ଗୋଳମାଳ କରି ପକାଇଲା । ସେ ଭୀଷଣ ଭାବରେ ବ୍ୟସ୍ତ ହୋଇ ଉଠିଲା । ଏଥର ସେ ଅଣନିଶ୍ୱାସୀ ହୋଇ ଧାଇଁଲା ଗୁହାଳ ଆଡକୁ । ଚକରାକୁ ଡାକି ଉଠାଇବାକୁ ସମୟ ନଥିଲା ତା' ପାଖରେ ।

ମାଳତୀର ଅତି ଆପଣାର ଗାଈ ବଉଳ । ବଉଳକୁ ଦିନରେ ଘଡିଏ ନଦେଖିଲେ ମାଳତୀର ଭାତ ହଜମ ହୁଏ ନାହିଁ । ଏତେ ନିବିଡ ସଂପର୍କ ଭିତରେ ସେ ହୁଏତ ଚକରାକୁ ଛାଡି ଦିନଟିଏ ରହି ପାରିବ କିନ୍ତୁ ବଉଳକୁ ନୁହେଁ । ବଉଳଟା ସତେ ଯେମିତି ତା ନିଜ ଅନ୍ତଃପାଡି ଜନ୍ମକଲା ଝିଅ । କାହିଁକି କେଜାଣି ବଉଳଟା ତା' ଅନ୍ତର ଭିତରେ ଗୋଟାଏ

ବିରାଟ ଶୂନ୍ୟସ୍ଥାନରେ ଆସ୍ଥାନ ଜମେଇ ବସିରହିଛି । ବଉଳ , ତା' ଘରକୁ ଆସିବା ପରଠାରୁ ମାଳତୀ ନିଜର ବାଂଝ ଦୋଷ କଟିଯାଇଛି ବୋଲି ଆପାତତଃ ଧରି ନେଇଥାଏ । ବଉଳ ଅଛି ତ ତା'ର ସବୁକିଛି ଅଛି । କ'ଣ ମିଳିବ ସେ ପୁଅ ଝିଅରୁ ? ମାଳତୀ ହୃଦୟର ଏ ପ୍ରକାର ଉଦାରତା ପାଖରେ ଚକରାର ଆଶା ଆକାଂକ୍ଷାର ପ୍ରଚଣ୍ଡ ଶିଖା ଏକ ପ୍ରକାର ମଳିନ ହୋଇ ପଡ଼ିଥାଏ । ଗୋଟିଏ ମା' ଯଦି ଏତିକି ତ୍ୟାଗ କରି ପାରିଲା, ସେ ବା ପୁରୁଷ ହୋଇ କରି ନ ପାରିବ କାହିଁକି । ମୋଟା ମୋଟି ଭାବରେ ସେମାନଙ୍କ ଛୋଟ ପରିବାରର ଜଣେ ମାନ୍ୟଗଣ୍ୟ ସଦସ୍ୟ ହିସାବରେ ମାଳତୀ ଓ ଚକରାର ଅପତ୍ୟ ସ୍ନେହ ଜନିତ ଶୂନ୍ୟତାରେ ପୂର୍ଣ୍ଣତା ଭରି ଦେଇଥାଏ ଏଇ ବଉଳ ।

ଦୀର୍ଘ ଅଠର ବର୍ଷର ଦାମ୍ପତ୍ୟ ଜୀବନ ବିତେଇ ସାରିଥିଲେ ମଧ୍ୟ ମାଳତୀର ଶୂନ୍ୟକୋଳ ତଥାପି ଅପୂର୍ଣ୍ଣ । ଦୀର୍ଘ ଦିନ ଧରି ଦେବା ଦେବୀ ପୂଜା, ଦାନଧର୍ମ, ଜଡ଼ିବୁଟି, ଡ଼ାକ୍ତର କବିରାଜ କରିସାରିବା ପରେ ମାଳତୀ ନିରାଶ ହୋଇ ପଡ଼ିଥିଲା ସତ କିନ୍ତୁ କେବେ ବି ଭାଙ୍ଗି ପଡ଼ିନଥିଲା । ତା'ର ବିଫଳତା ପାଇଁ ଆଉ କାହା ଉପରେ ଅଭିମାନ କରି ବସିବ ଯେ ? ବରଂ ତା' ନିଜ ଭାଗ୍ୟକୁ ଦୋଷ ଦେଇ ସେଥିପାଇଁ କିଛି ପ୍ରତିକାର ନାହିଁ ବୋଲି ଧରିନେଇଥିଲା । ତଥାପି କେଜାଣି କାହିଁକି ମାଳତୀ ମନରେ ବେଳେ ବେଳେ ଧାରଣା ଆସୁଥାଏ ଯେ ଦିନେ ସେ ନିଶ୍ଚୟ ଗର୍ଭଧାରଣ କରିବ । ସାହି ପଡ଼ିଶାରେ କୌଣସି ନୂଆ ବୋହୂର ପିଲାପିଲି ହେବାର ଖବର ପାଇଲେ ତା' ସହିତ ଅନ୍ତରଙ୍ଗ ଭାବରେ ମିଶିବା , ମନଖୋଲି ଗପସପ କରିବାରେ ମାଳତୀର ଭାରି ସଉକ । କେବେ ଯଦି କୌଣସି କାରଣରୁ ତା'ର ମାସିକ ସମୟ ଗଡିଯାଏ ତାକୁ ଲାଗେ ସତେ ଯେମିତି ତା' ପେଟରେ ପିଲାଟିଏ ରହିଯାଇଛି । ତାକୁ ଖାଲିଟାରେ ବାନ୍ତି ବାନ୍ତି ଲାଗିଲା ଭଳି ଲାଗେ । ଗତ କିଛିଦିନ ହେବ ମାଳତୀର ମାସିକ ସମୟ ଗଡିଯାଇଥାଏ । ଏଥର ମଧ୍ୟ ମାଳତୀ ଭାବୁଥାଏ ସତରେ ତା' ପେଟରେ ପିଲାଟିଏ ରହିଯାଇ ନାହିଁ ତ ? ତା' ମନଟା ଖୁସିରେ ଗଦ୍ ଗଦ୍ ହୋଇ ଉଠୁଥାଏ । ତାକୁ ସତରେ ବାନ୍ତି ବାନ୍ତି ମଧ୍ୟ ଲାଗିଲା । ଖୁସିରେ ତା'ର ଖାଇବା ପ୍ରତି ଆଗ୍ରହ ମଧ୍ୟ ରହିଲା ନାହିଁ । ଚାହୁଁ ଚାହୁଁ ଚାରିମାସ ଅତିକ୍ରମ କରିଗଲା । ମାଳତୀ ଅନୁଭବ କଲା ସତେ ଯେମିତି ତାର ପେଟ ଫୁଲିବାକୁ ଆରମ୍ଭ କରିଛି । ଏଥର ତା'ର ଗୋଡ ତଳେ ଲାଗୁନଥାଏ । ଏତେ ଦିନ ପରେ ଠାକୁରେ ତା' ଗୁହାରୀ ଶୁଣିଛନ୍ତି । ପୁଅଟିଏ ହେଲେ ଠାକୁରଙ୍କୁ କେତେ କ'ଣ ଦେଇ ପକାଇବ ବୋଲି କ'ଣ ବୋଲି କ'ଣ ମାନସିକ କରି ଚାଲିଥାଏ । ମାଳତୀର ଖୁସିରେ ଚକରାର ଖୁସି ମଧ୍ୟ କହିଲେ ନସରେ । ଦିନେ ରାତିରେ ମାଳତୀର ପେଟରେ ଚକରା ନିଜର ଟାଣୁଆ ହାତଟାକୁ ଆଦର ସହକାରେ ବୁଲାଇ ଆଣି କହିଲା, ''ତୋର ଦି'ଟା ପୁଅ ହବଲୋ ମାଳ ।'' ଚକରା ହାତକୁ ତା' ପେଟ ଉପରୁ ଖସାଇ ଆଣି ମାଳତୀ ଉତ୍ତର ଦେଲା, '' ନାଇଁଲୋ ମା', ମୋର ଦି'ଟା ପିଲା ଦରକାର ନାହିଁ । ମୋର କେବଳ ଗୋଟିଏ ପୁଅ ଦରକାର । ଦି' ଦି' ଟା ପିଲାଙ୍କୁ ସମ୍ଭାଳିବା କି ଯେ କଷ୍ଟ ସେ କଥା ତମେ

ପୁରଷ ଲୋକ କ'ଣ ଜାଣିବ ? ଠାକୁରେ କରନ୍ତୁ ଆମର ଗୋଟାଏ ଗୋରା ତକ୍ ତକ୍ ଗୁଲୁଗୁଲିଆ ପୁଅ ହେଉ ।'' ମନେ ମନେ ଏଥର ହସି ପକାଇଲା ମାଳତୀ ।

କାଲିପରି ମାଳତୀର ମନେ ପଡୁଛି, ଯେଉଁଦିନ ବଉଳ ତା' ପ୍ରଥମ ମାସିକିଆ କଅଁଳା ବାଛୁରୀଟାକୁ ସାଥିରେ ନେଇ ପାଦ ରଖିଥିଲା ତା'ରି ଦାଣ୍ଡରେ । ଦାଣ୍ଡ ଦୁଆରେ ସଜନା ଗଛଟାରେ ବଉଳକୁ ବାନ୍ଧିଦେଇ ଚକରା ସେଦିନ ଗୋଟାଏ ଗଡ ଜୟ କରିବାର ଆତ୍ମସନ୍ତୋଷ ଲାଭକରିଥିଲା । ବଉଳ ମଥାରେ ହଳଦୀ ସିନ୍ଦୂର ବୋଳିଦେଇ ତା' ପାଟିରେ କେରାଏ ଦୁବଘାସ ପୁରାଇ ଦେଇଥିଲା ମାଳତୀ । ତାକୁ ବହୁତ ସମୟ ଧରି ଆଉଁସି ଖୁବ୍ ଗେଲ କରିଥିଲା । ମାଳତୀ ତା' ଜୀବନର ସବୁକିଛି ସାଇତା ସ୍ନେହ ଅଜାଡି ଦେଇଥିଲା ବଉଳ ପାଖରେ । କୋଡ ଆଉଁସା ପାଇଲେ କିଏ ବା ଆପଣାର ହେଇ ନଯିବ ଯେ ? ବଉଳକୁ ଆଦର ଯତ୍ନ କରି ମାଳତୀ ଯେତିକି ଖୁସି ହେଉଥିଲା, ତା' ଠାରୁ ଅଧିକ ଖୁସି ହେଉଥିଲା ଚକରା, କେବଳ ମାଳତୀ ଖୁସିରେ ଖୁସି ହୋଇ । ବଉଳ ଏବଂ ତା' ଛୁଆର ସେବା ଯତ୍ନରେ ମାଳତୀର ପୁରାଦିନର ସମୟ କଟି ଯାଉଥାଏ । ତା'ରି ଭିତରେ ସେ ଭୁଲି ଯାଉଥାଏ ତା' ବନ୍ଧ୍ୟା ଦୋଷର ଦୁଃଖ, ଗ୍ଲାନି, ସବୁକିଛି । ବଉଳକୁ ନେଇ ତା'ର ବର୍ତ୍ତମାନ । ବଉଳକୁ ଛାଡି ତା'ର ଯେମିତି ଭବିଷ୍ୟତ ବୋଲି କିଛି ନାହିଁ । ବଉଳକୁ ଅତୀତର ଇତିହାସ ଭିତିରେ ଛାଡି ଦେବାକୁ ମଧ୍ୟ ମାଳତୀ ଏକଦମ ନାରାଜ ।

ପ୍ରଥମ ଛୁଆ ପରେ ଏଥର ବଉଳର ଦ୍ୱିତୀୟ ଗର୍ଭ । ବଉଳ ହମ୍ବା ରଡି କରି ଯେଉଁଦିନ ଗୁହାଳଟାକୁ କମ୍ପାଇ ଦେଇଥିଲା, ତା' ଦେହରେ, ମନରେ ପ୍ରଚଣ୍ଡ ଉତ୍ତେଜନା ଭରି ରହିଛି ଏବଂ ସେ ପୁଣି ଥରେ ଗର୍ଭଧାରଣ କରିବାକୁ ଚାହେଁ, ଏକଥା ସେ ନିର୍ବିକାର ଭାବରେ ସୂଚନା ଦେଇଥିଲା । ସତକୁ ସତ ସେଦିନ ବୁଲା ଷଣ୍ଢଟାଏ ସଦପେ ପହଞ୍ଚି ଯାଇଥିଲା ବଉଳର ଗୁହାଳ ଭିତରେ । ସେଦିନ ଘଟଣାର ପ୍ରତ୍ୟକ୍ଷଦର୍ଶୀ ମାଳତୀ ସେ କଥା ମନେ ପକାଇ ବେଳେବେଳେ ମନକୁ ମନ ଫିକ୍ କରି ହସି ପକାଏ । କ୍ରମେ ବଉଳଠାରେ ଗର୍ଭଧାରଣ କରିବାର ସମସ୍ତ ଲକ୍ଷଣ ସ୍ପଷ୍ଟ ହୋଇ ଉଠିଲା, ଠିକ୍ ଯେମିତି ମାଳତୀଠାରେ ସମସ୍ତ ଲକ୍ଷଣମାନ ଫୁଟି ଉଠୁଥିଲା । ତା' ପରଠାରୁ ବଉଳର ହମ୍ବା ରଡି ଆଉ ଶୁଣାଯାଇ ନଥିଲା । ତା' ପେଟ କ୍ରମଶଃ ଫୁଲିବାକୁ ଆରମ୍ଭ କଲା । ତା' ଶୁଖି ଆସୁଥିବା ପହ୍ନାର ଆକାର କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ମାଳତୀର ଖୁସି ଏଥର କହିଲେ ନ ସରେ । ସେ ଖୁସି ହେଉଥିଲା ଏଇଥିପାଇଁ ଯେ ଏଥର ସେ ମଧ୍ୟ ବଉଳକୁ ଦେଖେଇ ଦେବ ବିଳମ୍ବ ହେଲେ ସୁଦ୍ଧା ମାଳତୀ ବଉଳ ଭଳି ଗର୍ଭଧାରଣ କରିବାକୁ ସମର୍ଥ । ତାକୁ ପରୋକ୍ଷରେ ଟିଟ୍‌କାରୀ ମାରୁଥିବା ସେଇ ଗାଁର ସ୍ତ୍ରୀ ଲୋକମାନଙ୍କୁ ସେ ଜଣାଇ ଦେବ ଯେ ସେ କେବେବି ଜନ୍ମ ବାଂଝ ନୁହେଁ କିମ୍ବା ତା' ଚକରା ନପୁଂସକ ନୁହେଁ । ମାଳତୀର ସ୍ନେହ ମମତା କ୍ରମେ ବଉଳ ପ୍ରତି ମାତ୍ରାଧିକ ଭାବରେ ବଢି ଚାଲିଲା, ଠିକ୍ ଯେମିତି ଚକରାର ଆକାଶ ଛୁଆଁ ଆଦର ଯତ୍ନ ବଢି ବଢି ଚାଲିଥାଏ ମାଳତୀ ପ୍ରତି । ବଉଳକୁ ପେଜ ତୋରାଣୀ ଖାଇବାକୁ ଦେଇସାରିବାପରେ ତା'ର ଫୁଲି

ଉଠୁଥିବା ପେଟରେ ହାତ ବୁଲାଇଆଣେ ମାଳତୀ । କେବେ କେବେ ନିଜ ପେଟରେ ନିଜ ହାତକୁ ଥରେ ବୁଲାଇଆଣି ବଉଳାର ପେଟ ସାଙ୍ଗରେ ତା' ନିଜ ପେଟକୁ ତୁଳନାକରି ବସେ । ଆଉ ମାସ କେତେଟା ପରେ ତା' କୁନି ଛୁଆଟା କୁଆଁ କୁଆଁ ରାବରେ ତା' ଘରଟାକୁ କମ୍ପେଇଦେବ, ଠିକ୍ ଯେମିତି ବଉଳାର ଛୁଆଟା ହମ୍ବା ରଡିରେ ତା' ଗୁହାଳଟାକୁ ମୁଖରିତ କରିବସିବ । ବଉଳ ମୁହଁକୁ ନିଜ ଗାଲରେ ଚାପିଧରି ମାଳତୀ ତା' କାନରେ ଫୁସ୍ ଫୁସ୍ କହି ପକାଏ, "ସତେ ଲୋ ବଉଳ, ତୁ'ଟା ଭାରି ଲକ୍ଷ୍ମୀବନ୍ତ । ମୁଁ ଆଜି ଯାହାକିଛି ହାତ ପାହାନ୍ତାରେ ପାଇଛି କେବଳ ତୋ'ରି ପାଇଁ , ତୋତେ ସେବା ଯତ୍ନ କରି ହିଁ ପାଇଛି । ତୋ'ରି ପାଇଁ ବାଂଝଦୋଷରୁ ଆଜି ମୁଁ ମୁକ୍ତି ପାଇବାକୁ ଯାଉଛି । ତୁ ମୋ ନାଁ ଫିଟେଇ ଦେଲୁ ଲୋ ବଉଳ । ଠାକୁରେ ତତେ ଶହେବର୍ଷ ପରମାୟୁ ଦିଅନ୍ତୁ । " ବଉଳ ମୁଣ୍ଡ ହଲାଇ ମାଳତୀର ମନସ୍ତତ୍ତ୍ୱକୁ ଆନ୍ତରିକତାର ସହ ସ୍ୱୀକାର କରିନିଏ । ଦିନ ପରେ ଦିନ, ମାସ ପରେ ମାସ ଗଡି ଚାଲିଥାଏ ।

ତରବରରେ ଘରର ଅଧାଭଙ୍ଗା ଦରଜାଟାକୁ ଖୋଲିଦେଲା ମାଳତୀ । ଉତ୍କଣ୍ଠାରେ ତା'ର ଛାତି ଧଡପଡ କରୁଥାଏ । ନିଶ୍ୱାସ ପ୍ରଖରରୁ ପ୍ରଖରତର ହେବାକୁ ଲାଗିଥାଏ । ଏକ ମୁହାଁ ହୋଇ ଗୁହାଳ ଆଡକୁ ଧାଇଁଥାଏ ସେ । ଗତ ରାତିରେ ଆଉଜା ଯାଇଥିବା ଗୁହାଳର ବରଡା ତାଟ ଦରଜାଟା ପୁରାପୁରି ଖୋଲା । ବଉଳା ଉତ୍ତେଜନାରେ ଫଁ ଫଁ କରୁଥାଏ । ତା' ପାଖରେ ବୀରଦର୍ପରେ ଛିଡାହୋଇ ସଁ ସଁ ହେଉଥାଏ ସେଇ ବୁଲା ଷଣ୍ଢଟା, ଯାହାକୁ ସେ କେତେମାସ ପୂର୍ବରୁ ଏଇଠି ଏଇ ଗୁହାଳ ଭିତରେ ନିଜ ଆଖିରେ ଅଁଲାଜୁକ ଭାବରେ ଦେଖିଥିଲା ଏବଂ ଅସୁମାରୀ କଳ୍ପନା ଜଳ୍ପନା ଭିତରେ ବୁଡି ଯାଇଥିଲା ଦୀର୍ଘ ଦିନ ଧରି । ମୁଣ୍ଡ ଉପରେ ଆକାଶଟା ଖସି ପଡିଲାଭଳି ଅନୁଭବ କଲା ମାଳତୀ । ଏ କି ଅଘଟଣ ହେଲା ? ବଉଳଠାରେ ଯେଉଁସବୁ ଲକ୍ଷଣ ଫୁଟି ଉଠିଥିଲା ସେସବୁ କ'ଣ ମିଛ ଥିଲା ? ଆଉ ଅଧିକ ଆଗକୁ ଚିନ୍ତା କରି ପାରିଲାନି ମାଳତୀ । ଏଥର ତା'ର ଛଳଛଳ ଆଖି ଦୁଇଟା ନିମ୍ନଗାମୀ ହେଲା । ତା'ର ଲୁହଭିଜା ଆଖି ଦୁଇଟା ଆଶ୍ଚର୍ଯ୍ୟରେ ଆହୁରି ବିସ୍ଫାରିତ ହୋଇଗଲା, ଯେତେବେଳେ ସେ ଲକ୍ଷ୍ୟକଲା ତା'ର ନିଜ ପାଦ ପର୍ଯ୍ୟନ୍ତ ବୋହି ଆସିଥିବା ରକ୍ତର ଧାରକୁ । ସତରେ କ'ଣ ସେ ଋତୁମତୀ ହୋଇଛି ? ମାଳତୀ ଅନୁଭବ କରୁଥିଲା ସମଗ୍ର ପୃଥିବୀଟା ତା' ଚାରି ପାଖରେ ଘୁରିବାକୁ ଆରମ୍ଭ କରିଛି । ତାକୁ ଲାଗୁଥିଲା ସତେ ଯେମିତି ସାହି ପଡିଶାର ଅସହିଷ୍ଣୁ ସ୍ତ୍ରୀ ଲୋକମାନେ ତା'ରି ଆଡକୁ ଆଙ୍ଗୁଳି ଦେଖାଇ ହସିହସି ବିଦ୍ରୁପ କରୁଛନ୍ତି, "ମାଳତୀ ଗୋଟାଏ ବାଂଝ । ପିତୃପୁରୁଷକୁ ପିଣ୍ଡ ଦେବାକୁ ସେ ଅଯୋଗ୍ୟ ।" ମାଳତୀର ପାଦତଳର ପୃଥିବୀ ସତେ ଯେମିତି ଦି' ଫାଳ ହେଇ ଯାଉଥିଲା ଏବଂ ସେ ଖସି ପଡୁଥିଲା ତଳକୁ ତଳକୁ, କାହିଁ କେଉଁ ଅତଳ ଗର୍ଭକୁ ।



# ଘାସ ଫୁଲର ମୃତ୍ୟୁ

ଅଧରାତିର ଅଳସ ନିଦଟା ଅଧାରୁ ଭାଙ୍ଗିଦେଇ କ'ଣ ଗୋଟାଏ ଅଘଟଣ ଘଟିଲା ବୋଲି ବାହାରକୁ ଉଠିଆସିଲା ଚଇତା । ବାଦଲ ସନ୍ଧିରେ ଝାପ୍‌ସା ଜହ୍ନ ତା'ର କୁଡିଆ ଚାରିପଟେ ଲୁଚିକାଳି ଖେଳୁଥିଲା । ଲଗାଣ ବର୍ଷାର ରିମ୍‌ଝିମ୍ ସ୍ୱର ସହିତ ତୁହାକୁ ତୁହା ଥଣ୍ଡା ପବନ ତା' ଦେହ ମନକୁ ଉଲ୍ଲସିତ କରିଦେଲା । ବାହାରେ ଲୋକମାନଙ୍କ ଗହଳି ଓ ପ୍ରବଳ କୋଳାହଳ । ତା'ରି ଘରସାମନାରେ ଯାଇଥିବା ରାସ୍ତା ଦେଇ ଶହଶହ ଲୋକ ହୋହାଲ୍ଲା କରି ଖାଲି ଏପଟ ସେପଟ ଦୌଡୁଥାନ୍ତି । ଚଇତା କିଛି ବୁଝିନପାରି ଆତଙ୍କିତ ଅବସ୍ଥାରେ ରାସ୍ତାଉପରକୁ ଉଠିଆସିଲା । ରାତି ଅଧରେ ତା'ରି ଘର ସାମ୍ନା ରାସ୍ତା ଉପରେ ଲୋକମାନଙ୍କ ଦୌଡ ପ୍ରତିଯୋଗୀତା ବଢିବା ସଂଗେସଂଗେ କୋଳାହଳ ସହ ସମସ୍ତଙ୍କ ମନରେ ଆତଙ୍କ ବଢୁଥିବାର ଲକ୍ଷ୍ୟକଲା ଚଇତା । ଯାହାକୁ ପଚାରିଲେ ମଧ କିଛି ଉତ୍ତର ନାହିଁ । ଚଇତାଟା କୋଉ ମଣିଷରେ ଗଣା ଯେ ତା' କଥାକୁ ଖାତିର କରି କିଏ ବା କାହିଁକି ଉତ୍ତର ପଦେ ଦେବା ପାଇଁ ସମୟ ନଷ୍ଟ କରିବ ? ବହୁଲୋକଙ୍କୁ ପ୍ରଶ୍ନ ପଚାରି  ପଚାରି ନିରାଶ ହୋଇପଡିଲା ଚଇତା । କ'ଣ କାହାଘରେ ଚୋର ପଶିଲା, ନାଁ କେଉଁଠି ନିଆଁ ଲାଗିଗଲା ? ହେଲେ ଲୋକଗୁଡାକ ନଇବନ୍ଧ ଆଡକୁ ଦୌଡୁଛନ୍ତି କାହିଁକି ? ଚଇତା ଆଉ ଅଧିକ ଚିନ୍ତା କରିବା ପୂର୍ବରୁ ଆଗେଇଲା ନଇବନ୍ଧ ଆଡକୁ । ତା' ଘରଠୁ ନଇବନ୍ଧ ମାତ୍ର ଡାକେ ବାଟ । ଝିପ୍‌ଝିପ୍ ବର୍ଷା ଲାଗି ରହିଥାଏ । ମୁଣ୍ଡରେ ଗାମୁଛା ପକାଇ ପାଦର ଗତି ବଢାଇଲା ଚଇତା ।

ଷାଠିଏ ବର୍ଷ ବୟସ୍କ ବୁଢା ଚଇତା ଜେନା ସାରଙ୍ଗପୁର ମୌଜାର ଖାସ୍ ଅଧିବାସୀ । ବାପ ମା' ଛେଉଣ୍ଡ ଚଇତା ପିଲାଟି ଦିନରୁ ସାରଙ୍ଗପୁରରେ ତା' ମାଉସୀ ଘରେ ରହି ପରଦୁଆରେ ପାଇଟି କରି ଚଳିଆସିଛି । ସେଇ ଗାଁର ଗରିବ ଝିଅ ଗୁରୁବାରିକୁ ନେଇ ସଂସାର ଗଢିବାକୁ ଚେଷ୍ଟା କରିଛି । ନିଜ ଦେହରୁ ଝାଳ ନିଗାଡି ଅନ୍ୟମାନଙ୍କର ବାଡିବାଡି ଜମିରେ ସୁନାଫସଲ ଫଳେଇଛି । ସାରଙ୍ଗପୁରକୁ ତା' ନିଜ ଗାଁଠୁ ବଳି ସେ ଅଧିକ ଭଲପାଇଛି । ଚଇତା ସାରଙ୍ଗପୁର ଗାଁର ପିଲାଠୁଁ ବୁଢା ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟପାତ୍ର । ଗାଁଲୋକେ ଗାଁମୁଣ୍ଡ ଗୋଚର ଜମିରୁ ଦୁଇଗୁଣ୍ଠ ଚଇତାକୁ ଦେଇଛନ୍ତି ରହିବାପାଇଁ । ରାସ୍ତାକଡରେ କୁଡିଆଟିଏ କରି ବୁଢାବୁଢି ଦୁହେଁ ପରପାଇଟି କରି ଚଳିଆସିଛନ୍ତି ଏଯାବତ୍ । ଜୀବନରେ ସୁଖ ଓ ଦୁଃଖ ଚଇତା ପାଇଁ ଏକା କଥା । ନିତି ଆଣେ, ନିତି ଖାଏ । ନଆଣିଲେ ଉପାସ ଶୁଏ ପଛେ କାହାରି ଦୁଆରେ ହାତ ପତାଏ ନାହିଁ । ତା' ସଂସାର କହିଲେ ସେ ନିଜେ ଆଉ ତା' ଗୁରୁବାରି । ପିଲାପିଲି ନାହାଁନ୍ତି ବୋଲି  ଗୁରୁବାରି ଓ ଚଇତା କେହି  କାହାକୁ କେବେବି ଦୋଷ ଦେଇନାହାଁନ୍ତି । ଭାଗ୍ୟରେ ନାହିଁ ବୋଲି ଧରିନେଇ ପରସ୍ପର ମୁହଁକୁ ଚାହିଁ ଦିନକାଟି ଚାଲିଛନ୍ତି । ସାରଙ୍ଗପୁରର ପ୍ରତ୍ୟେକ ପିଲା ସତେ ଯେମିତି ତାଙ୍କର ନିଜପିଲା ।

ନଈବନ୍ଧ ଉପରେ ଶହଶହ ଲୋକଙ୍କ ଭିଡ । ଭିଡ ଭିତରେ ପଶି ଚଇତା ନଈବନ୍ଧ ଉପରେ ଛିଡାହେଲା । ପୂର୍ଣ୍ଣଗର୍ଭା ଖରସ୍ରୋତା ନଦୀ । ଉତ୍ତାଳ ତା'ର ଜଳସ୍ରୋତ । କୂଳ ଲଙ୍ଘିବାର ସକଳ ପ୍ରଚେଷ୍ଟାକୁ ମଜଭୁତ ନୀଦବନ୍ଧ ପ୍ରତିବନ୍ଧକ ସାଜି ବୀର ଦର୍ପରେ ଦଣ୍ଡାୟମାନ । ଜବରଦସ୍ତ ସଂଘର୍ଷ ଚାଲିଥାଏ ଉଶୃଙ୍ଖଳିତ ଜଳସ୍ରୋତ ଓ ସ୍ଥିର ନଦୀବନ୍ଧ ମଧ୍ୟରେ । ସଂଘର୍ଷ ଜନୀତ ଘୋ ଘୋ ଗର୍ଜନ ଦର୍ଶକ ମାନଙ୍କୁ ଗଭୀର ଭାବରେ ଆତଙ୍କିତ କରୁଥାଏ । ପ୍ରଖର ଜଳସ୍ରୋତ ସାଙ୍ଗକୁ ପ୍ରବଳ ପବନ ପରିବେଶକୁ ଗମ୍ଭୀର କରିବାରେ ବେଶ୍ ସାହାଯ୍ୟ କରୁଥାଏ । ଲୋକମାନଙ୍କ ନିକଟରେ ନଦୀର ଭୟଙ୍କର ସ୍ୱରୂପ ଅପେକ୍ଷା ଅଧିକ ଭୟଙ୍କର ହୋଇଉଠୁଥାଏ ନଦୀବନ୍ଧ ଉପରେ ଥିବା ଗୋଟିଏ ଝଙ୍କାଳିଆ ବରଗଛ । ବନ୍ଧର ଉଚ୍ଚତା ଅତିକ୍ରମ କରିବାକୁ ଆହୁରି ପ୍ରାୟ ଦୁଇଫୁଟ ପାଣିର ଆବଶ୍ୟକତା ଥିବା ସମୟରେ ବରଗଛର ଏକ ଚେରପାଖଦେଇ ନଦୀବନ୍ଧର ଅପରପାର୍ଶ୍ୱରେ ପାଣିର ଏକ ସ୍ରୋତ ବୋହିବା ଅରମ୍ଭ ହୋଇଯାଇଥାଏ, ଯାହାକି ଲୋକମାନଙ୍କ ମନରେ ଆତଙ୍କ ସୃଷ୍ଟି କରିବାର ମୂଖ୍ୟ କାରଣ ହୋଇଉଠିଥାଏ । ଗଛଚେର ଦେଇ ନଦୀବନ୍ଧରେ ଘୋଳିଆ ସୃଷ୍ଟିହେଲେ ସେହି ସ୍ଥାନରେ ବନ୍ଧ ଭାଙ୍ଗିବା ପ୍ରାୟ ନିଶ୍ଚିତ । ଘୋଳିଆର ଆକାର କ୍ରମଶ ବଢିବାରେ ଲାଗିଥାଏ । ବରଗଛ ପାଖରେ ପହଞ୍ଚୁଥିବା ଲୋକମାନେ ଆତଙ୍କରେ ଶିହରି ଉଠୁଥାଆନ୍ତି । ସେମାନଙ୍କର ମନେପଡୁଥାଏ ବିଗତ ଦଶବର୍ଷ ପୂର୍ବେ ଏହି ନଦୀବନ୍ଧ ଭାଙ୍ଗି ସୃଷ୍ଟିହୋଇଥବା ପ୍ରଳୟଙ୍କରୀ ବନ୍ୟା ବିପ୍ୱାତର କରୁଣ କାହାଣୀ । ତେଣୁ ଗଛମୂଳରେ ଛିଡାହୋଇ ପ୍ରତିକାର ପାଇଁ କିଛି ଉପାୟ ଚିନ୍ତା କରିବାରେ ଅଧିକ ସମୟ ନଷ୍ଟ କରିବା ଅବସ୍ଥାରେ କୌଣସି ଲୋକ ନଥାନ୍ତି । ପଛମୁହାଁ ହୋଇ ଦୌଡୁଥାଆନ୍ତି ଗାଁ ଆଡକୁ । ବ୍ୟକ୍ତିଗତ ସ୍ୱାର୍ଥ ସେମାନଙ୍କୁ ଅନ୍ଧ କରିଦେଇଥାଏ । ସାରଙ୍ଗପୁରଠାରୁ ଆରମ୍ଭ କରି ଆଖପାଖ ଦଶଖଣ୍ଡ ଗାଁ ଓ ବିଚିତ୍ରପୁର ବଜାରର ଲୋକମାନଙ୍କ ଗହଳି ଲାଗିଥାଏ ନଦୀବନ୍ଧ ଉପରେ । ଚଇତା ସେହି ବରଗଛଆଡକୁ ମୁହାଁଇଲା । ଗଛମୂଳରେ ପହଞ୍ଚି ଅବସ୍ଥା ଯାହା ଦେଖିଲା ତା' ଗୋଡହାତ ଥରିବାକୁ ଲାଗିଲା । ତା' ମୁଣ୍ଡଟା ଚକର ଖାଇଗଲା । ତାକୁ ଦିଶିଗଲା ବନ୍ଧ ଭାଙ୍ଗିବାର ବାସ୍ତବ ଚିତ୍ର, ଯାହା ଦଶବର୍ଷ ତଳର ପ୍ରଳୟଙ୍କରୀ ବନ୍ୟାରେ ସେ ନିଜେ ଅଙ୍ଗେ ଲିଭେଇଥିଲା । ଚଇତା ଚେଷ୍ଟା କରିମଧ୍ୟ ଆଉ ଛିଡା ହୋଇପାରିଲା ନାହିଁ । ଫେରନ୍ତା ରାସ୍ତାରେ ଲୋକମାନଙ୍କ ପାଦ ସହିତ ସେ ମଧ୍ୟ ପାଦ ମିଳାଇଲା ।

ସାରଙ୍ଗପୁର ଗାଁ ଅତିକ୍ରମ କଲାପରେ ଆରମ୍ଭହୁଏ ବିଚିତ୍ରପୁର ବଜାର । ବଜାର ଇଲାକା ବଡନହେଲେ ମଧ୍ୟ ସେ ଅଞ୍ଚଳର ମୁଖ୍ୟ ବ୍ୟବସାୟ କେନ୍ଦ୍ର । ଚଇତାର ପାଦ ଅଟକିଗଲା ଠିକ୍ ବଜାର ଛକ ଉପରେ । ଅଧରାତିରେ ମଧ୍ୟ ଦୋକାନ ଗୁଡାକ ଖୋଲା । ଲୋକଗହଳି ମଧ୍ୟ ବେଶ ଲାଗିଥାଏ । ସମସ୍ତେ ଧଇଁସଇଁ ହୋଇ କାମରେ ଲାଗିଥାଆନ୍ତି । କାହାରି ମୁହଁରେ ଭାଷାନାହିଁ । ତଳମହଲାରୁ ଜିନିଷପତ୍ର ଉପରମହଲାକୁ ଆଉ ଚାଳଘରୁ ଜିନିଷପତ୍ର ଅନ୍ୟ ନିରାପଦ ସ୍ଥାନକୁ ବୁହା ଚାଲିଥାଏ ଆଉ ଅଳ୍ପସମୟପରେ ବଜାରଟା

ହୁଏତ ପୁରାପୁରି ଫାଙ୍କା ହୋଇଯିବ ବୋଲି ଅନୁଭବ କଲା ଚଇତା । ବେଶ୍ ଖୁସିରେ ସେ ଆଶ୍ୱସ୍ତିର ଦୀର୍ଘଶ୍ୱାସଟାଏ ଟାଣିଲା । ଠିକ୍ ଛକ ଉପରେ ତା'ରି ଆଖି ସାମନାରେ ବାସୁ ସାହୁର ବିରାଟ ଆଳୁ ପିଆଜ ଗୋଦାମ । ବସ୍ତା ବସ୍ତା ଆଳୁ, ବୋଝ ବୋଝ ପିଆଜ ତଳୁ ଉପର ମହଲାକୁ ବୁହାଚାଲିଥାଏ । ପ୍ରାୟ କୋଡିଏ ଜଣ ମୂଲିଆ ଝାଳନାଳ ହୋଇ କାମରେ ଲାଗିଥାଆନ୍ତି । ବାସୁ ସାହୁ ଅନ୍ତଃ ପେଟକୁ ବୋହି ବୋହି ଖାଲି ଉପରତଳ ହେଉଥାଏ । ଚଇତା ଏଥର ଆଗେଇଲା ବାସୁ ସାହୁ ଆଡକୁ । ଅଣ୍ଟାଭାଙ୍ଗି ଓଳଗୀ ହୋଇ ଗୁହାରିଟିଏ ବାଢିବସିଲା, ''ବାବୁ, ଗୋଟେ ଝୁଡି ଦେବେ ? ଛୋଟ, ବଡ, ଭଙ୍ଗା, ଯାହାହେଲେବି ଚଳିବ । କାଲି ସକଳୁ ମୁଁ ଫେରେଇ ଦେବି ।''

ବାସୁ ସାହୁ ଚଇତାର ମୁହଁକୁ କଟମଟ କରି ଚାହିଁଲା, '' ତୁ ଟା କି ବେହିଆଟାଏ କିରେ ? ତତେ କ'ଣ ଅବସ୍ଥା କିଛି ଦେଖାଯାଉନାହିଁ ? ଦେଖୁନୁ କେତେ ଲୋକ କାମରେ ଲାଗିଛନ୍ତି । ଏ ସମୟରେ ଝୁଡିଫୁଡି କିଛି ମିଳିବ ନାହିଁ । ଚାଲ୍, ଚାଲ୍ ରାସ୍ତାଛାଡ଼ । କାମ ଡେରି ହେଉଛି ।'' କହିକହି ବାସୁ ସାହୁ ଉପର ମହଲାକୁ ଉଠିଗଲା ।

ନିରାଶ ମନରେ ବିଚରା ଚଇତା ଯେମା ଖଣ୍ଡେ ଦୂରରେ ଛିଡାହେଲା । ସତରେ ଏ ଅସମୟରେ କାହାକୁ କିଛି ମାଗିବାଟା ମଧ୍ୟ ଅନ୍ୟାୟ । ମନକୁ ମନ ଠୋକର ଖାଇଲା ସେ । କିଛି ଦୂରରେ ସେ ଅଞ୍ଚଳର ବିଶିଷ୍ଟ କଣ୍ଟ୍ରାକ୍ଟର ହରିବାବୁଙ୍କ ତିନିମହଲା ବିଶିଷ୍ଟ କୋଠାଘର । ଚଇତାର ନଜର ଏଥର ତାଙ୍କରି ଘର ଉପରେ ପଡିଲା । ତଳ ମହଲାରେ ସିମେଣ୍ଟ ଓ ରଡ୍ ଗୋଦାମ । ଚଇତା ଆଗେଇଲା ତାଙ୍କରି ଘର ଆଡକୁ । ସେଠି ମଧ୍ୟ ସେହି ଏକା କଥା । ଧାଁ ଦଉଡ ଆଉ କୋଳାହଳ । ପ୍ରାୟ ପଚାଶ ଲୋକ ସିମେଣ୍ଟ ବସ୍ତା ବୋହୁଥାନ୍ତି ତଳ ମହଲାରୁ ଉପର ମହଲାକୁ । ତଥାପି ଶହଶହ ବସ୍ତା ସିମେଣ୍ଟ ପଡିରହିଥାଏ ଗୋଦାମ ଘରେ । ହରିବାବୁ ଗୋଦାମଘର ସାମ୍ନାରେ ଛିଡାହୋଇ ଚିତ୍କାର କରୁଥାନ୍ତି '' ଶୀଘ୍ର ଉଠାଅ, ଶୀଘ୍ର ଉଠାଅ । ବନ୍ଧ ଭାଙ୍ଗିବାକୁ ଆଉ ବେଶୀ ଡେରିନାହିଁ ।''

ଚଇତା ହରିବାବୁଙ୍କୁ ମୁଣ୍ଡନୁଆଁଇ ଓଳଗି ହେଲା ।

'' କିରେ ଚଇତା, ତୁ ତ' ବୁଢା ଲୋକ, ତୁ କ'ଣ ସିମେଣ୍ଟ ବସ୍ତା ଛାତ ଉପରକୁ ଉଠେଇ ପାରିବୁ ? ନାଁ ନାଁ, ତୋ ଦ୍ୱାରା ଏ ଭାରିକାମ ହେଇପାରିବ ନାହିଁ । କାହିଁକି ବେକାର ରାତି ଅଧରେ ଲୋଭକରି ଦୌଡି ଆସିଲୁ ? ତତେ କିଏ କାମ କରିବାକୁ କହିବ ? ଯାଅ, ତୁ ଘରକୁ ଫେରିଯା । ''

'' ବାବୁ ମୋର କେଇଖଣ୍ଡ ଖାଲି ସିମେଣ୍ଟ ଅଖା ଦରକାର ।''

'' ତୋ ମୁଣ୍ଡ ଠିକ୍ ଅଛିତ ? ତୁ ଦେଖୁନୁ ଏଇନେ ପରିସ୍ଥିତି କ'ଣ ? କୋଉ ମୁହଁରେ ତୁ ସିମେଣ୍ଟ ଅଖା ମାଗିବାକୁ ଆସିଲୁ ? ଚାଲ୍, ଚାଲ୍ । ଆସିଗଲା ରାତି ଅଧରେ ଅଖା ମାଗିବାକୁ । ସତେ ଯେମିତି ବସ୍ତା ବସ୍ତା ଧାନ ଚାଉଳ ଯା ଅମାରରେ ଭର୍ତ୍ତିହୋଇଛି । ବେହିଆ କ'ଣ ଗଛରେ ଫଳନ୍ତି । '' ହରିବାବୁ ଅନ୍ୟକାମରେ ମନଦେଲେ ।

ଶକ୍ତ ଅପମାନ ପାଇ କାନମୁଣ୍ଡ ଆଉଁସି ଫେରି ଆସିଲା ଚଇତା । ଏଭଳି ଅପମାନ ତ ତା'ର ଦେହସୁହା ହୋଇଯାଇଥିଲା । ପିଲାଠୁ ଆରମ୍ଭକରି ବୁଢ଼ା ପର୍ଯ୍ୟନ୍ତ, ଗାଁଗଣ୍ଡାଠୁ ଆରମ୍ଭ କରି ସହର ବଜାର ପର୍ଯ୍ୟନ୍ତ ବିଭିନ୍ନ ଢାଞ୍ଚରେ ବିଭିନ୍ନ ସମୟରେ ଯିଏ ସାରା ଜୀବନ ଅପମାନ ଖାଇ ଖାଇ ବଞ୍ଚିଆସିଛି , ତାକୁ ହରିବାବୁଙ୍କ ଅପମାନ ବାଧିଥାନ୍ତା ବା କାହିଁକି ? ସେତ ସମସ୍ତଙ୍କର ତଳସ୍ତରରେ ରହିବାକୁ ଶିଖିଆସିଛି । ଧନରେ, ଜନରେ, ସ୍ୱାଭିମାନରେ । ଉପରକୁ ମୁଣ୍ଡ ଉଠାଇବାକୁ ତାକୁ ସୁଯୋଗ ଦେବ କିଏ ?

ଏଥର ଚଇତାର ନଜର ବଜାର ଛାଡି ଗାଁ ଉପରେ ପଡିଲା । ମନଟା ତା'ର ଅସ୍ଥିର । ଯେ କୌଣସି ସମୟରେ ନଈବନ୍ଧଟା ଭୁସ୍‌କରି ଭାଙ୍ଗିଯିବ । ଆଖି ପିଛୁଳାକେ ଖେଳେଇ ହେଇଯିବ ନଈଟା ଯାକର ପାଣି ତାରି ଘର ଉପର ଦେଇ ଏଅଞ୍ଚଳ ସାରା । ଚଇତାର ପାଦ କ୍ଷିପ୍ର ହୋଇଉଠିଲା । ସେ ଭୁଲିଗଲା ବାସୁ ସାହୁର କଟୁ କଥା ଆଉ ହରିବାବୁଙ୍କ ମିଠା କଡା ଅପମାନ । ରାସ୍ତା କଡରେ ସାରଙ୍ଗପୁର ପଞ୍ଚାୟତର ଲୋକପ୍ରିୟ ସରପଞ୍ଚ ମହନି ଚୌଧୁରୀଙ୍କ ବାସଭବନ । ସେ ଅଞ୍ଚଳରେ ଅଖଣ୍ଡ ପ୍ରତିପତ୍ତି ମହନି ଚୌଧୁରୀଙ୍କର । ତାଙ୍କର ହାତ ଲେଉଟିଲେ ସମଗ୍ର ସାରଙ୍ଗପୁର ପଞ୍ଚାୟତଟା ଓଲଟିଯାଏ । ଧନ, ମାନ, ଜ୍ଞାନରେ ପରିପୂର୍ଣ୍ଣ ମହନି ଚୌଧୁରୀ ସେ ଅଞ୍ଚଳର ଅପ୍ରତିଦ୍ୱନ୍ଦୀ ନେତା । ଖାନ୍‌ଦାନୀ ବୁନିୟାଦ୍ ଘର, ବିରାଟ ଚଉପାଢ଼ି, ବିସ୍ତିର୍ଣ୍ଣ ଖାନାବାଡି । ପରିପୂର୍ଣ୍ଣତାର ବାତାବରଣ ସେ ଇଲାକାରେ କାୟାବିସ୍ତାର କରି ରହିଆସିଛି କାହିଁ କେତେ ପୁରୁଷରୁ । ସରପଞ୍ଚଙ୍କ ଫାଟକ ପାଖରେ ଚଇତାର ପାଦଟା ଖଟ୍‌କରି ଅଟକିଗଲା, ଯେତେବେଳେ ବିଜୁଳି ଆଲୁଅ ସେ ଇଲାକାକୁ ଅନ୍ଧକାର କରିଦେଇ ଚଟ୍‌କରି କେଉଁଆଡେ ଉଭେଇଗଲା । ଚୌଧୁରୀ ପରିବାରର କୋଳାହଳ ହଠାତ୍ ଦ୍ୱିଗୁଣିତ ହୋଇଉଠିଲା । ବହୁ ସଂଖ୍ୟାର ଲଣ୍ଠନ ଆଲୁଅରେ ଚୌଧୁରୀଙ୍କ ଘରବାଡି ଆଲୋକମାଳାରେ ଆଲୋକିତ ହୋଇଉଠିଲା । ତାଙ୍କର କର୍ମଚାରୀମାନେ ଆହୁରି ଚଞ୍ଚଳ ହୋଇ ଉଠିଲେ । ଘରର ବିଭିନ୍ନ ସରଞ୍ଜାମ ବୁହାଚାଲିଥାଏ ଉପର ମହଲାକୁ । ହାତୀଦାନ୍ତ ଖଚିତ ବଙ୍କୁଲୀ ବାଡିଟା ହାତରେ ଧରି ଚଉପାଢ଼ି ଭିତରେ ବିବ୍ରତ ଅବସ୍ଥାରେ ଟହଲ ମାରୁଥାନ୍ତି ଚୌଧୁରୀ ମହାଶୟ । ଆଲୋକର ଆଭା ପତଙ୍ଗକୁ ପ୍ରଲୋଭିତ କରିବା ସ୍ୱାଭାବିକ । ଫାଟକ ଖୋଲି ଭିତରକୁ ପଶିଲା ଚଇତା ।

" କିଏ ? " ଗର୍ଜନ କରି ଉଠିଲେ ଚୌଧୁରୀ ।

ଚଇତା ନୀରବ ।

"ମୁଁ ପଚାରୁଛି ସେଠି କିଏ ?"

"ମୁଁ ଚଇତା ହଜୁର ।"

" ଏତେ ରାତିରେ ତୋର ଏଠି କି କାମ ? କିରେ, ଆଜିକାଲି ରାତିଅଧିଆ ଚୋରି ଆରମ୍ଭ କରି ଦେଲୁଣି ନା କ'ଣ ? ଗାଁ ଗଣ୍ଡାରେ ସମସ୍ତେ ବର୍ତ୍ତମାନ ଜିନିଷପତ୍ର ସାଇତିବାରେ ବ୍ୟସ୍ତ । ଆଉ ଏଇଟା ତୋ ପାଇଁ ଗୋଟାଏ ମଉକା, ନୁହେଁ ? ଛି, ଛି ତୁମକୁ

ସବୁ ଏମିତିକା ଦୁର୍ବୁଦ୍ଧି ଦିଶୁଛି କେମିତି ? ଲାଗି ପାରୁନୁ ତ ମାଗି ଖାଉନୁ । ତତେ କ'ଣ ଲାଜ ସରମ କିଛି ନାହିଁ ? ଖାଲି ତୁ ଚଇତା ବୋଲି ତତେ ଛାଡି ଦେଲି । ନହେଲେ ତତେ ମୁଁ ପୋଲିସ ହାତରେ ଦେଇଥାନ୍ତି । ଯା, ଭଲ ଗତି ଅଛିତ ଶୀଘ୍ର ବାହାରି ଯାଅ ।''

'' ମୁଁ ଚୋରି କରିବାକୁ ଆସିନି ସାଆନ୍ତେ ।'' ଚଇତା କାନ୍ଦ କାନ୍ଦ ହୋଇ ଉଠିଲା ।

'' ତା' ହେଲେ ଏତେ ରାତିରେ କାହିଁକି ମୋ ଗେଟ୍ ଭିତରେ ପଶିଥିଲୁ ?''

'' ମୋର ଟିକିଏ ଆଲୁଅ ନିହାତି ଦରକାର ହଜୁର । ମତେ ଖଣ୍ଡେ ଲଣ୍ଠନ ଦେଲେ ମୁଁ କାଲି ସକାଳୁ ଫେରେଇ ଦିଅନ୍ତି ।''

'' ଅଲାଜୁକ । ତୁ କୋଉ ସାହସରେ ଲଣ୍ଠନ ମାଗିବାକୁ ଆସିଛୁ । ହରିଜନ ହୋଇ ମୋ ଲଣ୍ଠନ ଛୁଇଁବାକୁ ତୋ ବିବେକ ତତେ କହିଲା କେମିତି ?''

'' ଏ ଅନ୍ଧାରରେ କିଛି କାମ କରିଆଆନ୍ତି ସାଆନ୍ତେ ।''

'' ତୁ କ'ଣ ଦେଖି ପାରୁନୁ ସବୁ ଗୁଡାକ ଆଲୁଅ ଏଠି କାମରେ ଲାଗିଛି । ଏଁଠୁ କିଛି ଏବେ ଦେଇ ହବନାହିଁ । ତୋ ଘରେ ତ ଜିନିଷ ବୋଲି ବୋକଟାଏ ହବନି । ତୋର ପୁଣି ଆଲୁଅ କ'ଣ ଦରକାର ? ଯା', ଯା', ଶୀଘ୍ର ଘରକୁ ପଳା । ବନ୍ଧଭାଙ୍ଗି ଘାଇ ହେଲେ ତୋ ଘରଟା ଆଗ ଭାସିଯିବ । ଯାଅ, ଯାହା ପାରୁଛୁ ସମ୍ଭାଳ । ଘରଭଙ୍ଗା ଲିଷ୍ଟ ହେଲା ବେଳେ ଆସି ନାଁ ଲେଖେଇ ଦେଇଯିବୁ ।''

ହତାଶ୍ ହୋଇ ଉଠିଲା ଚଇତା । ତା' ଆଖି କଣରେ ସତକୁ ସତ ଲୁହ ଜକେଇ ଆସିଲା । କାଳ ବିଳମ୍ବ ନ କରି କ୍ଷୀପ୍ର ଗତିରେ ସେ ପୁଣି ଚାଲିଲା ଆଗକୁ ଆଗକୁ । ସମଗ୍ର ସାରଙ୍ଗପୁର ଗାଁଟା ରାତି ଅଧରେ ଏତେ ଅନ୍ଧାର ଭିତରେ ବି ଚଳ ଚଞ୍ଚଳ । ପିଲା ଠୁ ବୁଢା ପର୍ଯ୍ୟନ୍ତ ସମସ୍ତେ ସକ୍ରୀୟ । ସମସ୍ତେ ଭୟଭିତ ଅବସ୍ଥାରେ ନିଜ ନିଜର ଆସବାବପତ୍ର ସାଇତିବାରେ ବ୍ୟସ୍ତ । ବନ୍ଧ ଭାଙ୍ଗିବାକୁ ବୋଧହୁଏ ଆଉ ବେଶୀ ସମୟ ବାକିନାହିଁ । ଗାଁ ମଝିରେ ରାଧୁ ମାଷ୍ଟ୍ରଙ୍କ ଘର ଆଗରେ କାହିଁକି କେଜାଣି ଚଇତାର ପାଦଟା ପୁଣି ଅଟକି ଗଲା । ରାଧୁ ମାଷ୍ଟ୍ରେ ସେ ଅଞ୍ଚଳର ଜଣେ ବିଜ୍ଞ, ବିଚକ୍ଷଣ ପଣ୍ଡିତ । ଅଞ୍ଚଳର ବିଶିଷ୍ଟ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ରାଧୁମାଷ୍ଟ୍ରଙ୍କ ସ୍ଥାନ ଖୁବ ଉଚ୍ଚରେ । ଜଣେ ଦୟାଳୁ ପରୋପକାରୀ ବ୍ୟକ୍ତି ଭାବରେ ସେ ଖୁବ୍ ପରିଚିତ । ଚଇତା ଲକ୍ଷ୍ୟକଲା ରାଧୁମାଷ୍ଟ୍ରେ ଆଖି ବନ୍ଦକରି ବରଣ୍ଡା ଉପରେ ବସି ବିଷ୍ଣୁ ସହସ୍ରନାମ ଉଚ୍ଚାରଣ କରିବାରେ ବ୍ୟସ୍ତ । ପରିବାରର ଅନ୍ୟ ସମସ୍ତେ ଜିନିଷପତ୍ର ବନ୍ଧାବନ୍ଧି, ଉଠାଉଠି କରିବାରେ କାହାରିକୁ ନିଶ୍ୱାସ ମାରିବାକୁ ସମୟ ନାହିଁ । ଚଇତା ସାହସ କରି ବାରଣ୍ଡା ତଳେ ରାଧୁମାଷ୍ଟ୍ରଙ୍କ ଠାରୁ କିଛି ଦୂରରେ ଛିଡା ହେଲା ।

'' ଓଳଗି ବାବୁ ।''

'' କ'ଣ କିରେ ଚଇତା ?'' ରାଧୁମାଷ୍ଟ୍ରେ ଏଥର ଚମକିଲା ପରି ଆଖି ଖୋଲିଲେ,

'' ମୋର ଖଣ୍ଡେ କୋଦାଳ ଦରକାର ।''

ଏତେ ଦୁଃଖରେ ବି ରାଧୁ ମାଷ୍ଟ୍ରେ ଠୋ ଠୋ ହସି ଉଠିଲେ ।

"ରାତି ଅଧରେ କୋଦାଳ କ'ଣ କରିବୁ କିରେ ? ତୋ ମୁଣ୍ଡ ଖରାପ ହୋଇଗଲାଣି ଦେଖୁଛି । ଦେଖୁଛୁ ବନ୍ଧ ଭାଙ୍ଗିବା ଉପରେ । ଲୋକମାନଙ୍କର ଅବସ୍ଥା କ'ଣ ହବ ଠିକଣା ନାହିଁ । ଏ ସମୟରେ ତୁ କୋଦାଳ ଖୋଜୁଛୁ ? ବରଂ ମୋ ଘରେ କିଛି କାମ କରିଦେ । ମୋର ବହୁତ କାମ ବାକି ଅଛି । ମୋର କାମ ହୋଇଯିବ, ତୁ ବି କିଛି ପଇସା ପାଇଯିବୁ ।"

ଚଇତା ରାଧୁମାଷ୍ଟ୍ରଙ୍କ ମୁହଁକୁ ବଲବଲ କରି ଚାହିଁ ରହିଲା ସିନା କିଛି କହିପାରିଲା ନାହିଁ । ଏଥର ପଛମୁହାଁ ହୋଇ ଫେରିବାକୁ ଲାଗିଲା ତା'ଘର ଅଭିମୁଖେ । ପଛରୁ ରାଧୁମାଷ୍ଟ୍ରଙ୍କ କଣ୍ଠସ୍ୱର ଶୁଭୁଥିଲା, "ହଉ ହଉ, ତୁ ଯା । ତୁ ବିଚରା ଗରିବ ଲୋକ, ଆଗ ତୋ ନିଜ ଘରଟାକୁ ସମ୍ଭାଳ ।"

ନଈ ପାଣିର ଘୋ ଘୋ ଶବ୍ଦଟା ଚଇତା କାନ ପାଖରେ ଅତଡା ଖାଇବାକୁ ଲାଗିଲା । ସେତେବେଳେ ସେ ଭୁଲିଯାଇଥିଲା ବାସୁ ସାହୁର କଟୁକ୍ତି, ହରିବାବୁଙ୍କ ଅପମାନ, ମହନି ଚୌଧୁରୀଙ୍କ ଧମକ ଓ ରାଧୁ ମାଷ୍ଟ୍ରଙ୍କ ବ୍ୟଙ୍ଗୋକ୍ତି । ନିଜର ନୁଆଁଣିଆ ଚାଳଘରେ ଲଥ୍‌କରି ବସିପଡିଲା ଚଇତା । ଏ ସ୍ୱାର୍ଥପର ଦୁନିଆର ବିଚିତ୍ର ମଣିଷମାନଙ୍କ କଥା ଚିନ୍ତାକରିବାକୁ ତା' ପାଖରେ ଅଧିକ ସମୟ ନଥିଲା । ଗୁରୁବାରି ନିଘୋଡ ନିଦରେ ଶୋଇ ଘୁଙ୍ଘୁଂଡି ମାରୁଥିଲା । ଏଥର ଚଇତା ଦିଆସିଲି ବାହାର କରି ଡିବିରି ଆଲୁଅରେ ଘରଟିକୁ ଆଲୋକିତ କରିଦେଲା । ତା' ସଙ୍ଗେ ସଙ୍ଗେ ତା'ର ଦେହ, ମନ, ଆତ୍ମା ସବୁ ଯେମିତି ପୁଲକିତ ହୋଇଉଠୁଥିଲେ । ନଥିଲା ଘରର ପୁଟୁଳା ସରି ଆସବାବ ପତ୍ର ଇତସ୍ତତଃ ଭାବରେ ପଡିରହି ଚଇତାକୁ ଉପହାସ କରୁଥିଲା । ଚଇତା ଗୁରୁବାରି ମୁଣ୍ଡରେ ନିଜର ଆଶୀର୍ବାଦପୂର୍ଣ୍ଣ ହାତଟା ବୁଲେଇ ଆଣିଲା ସିନା କିନ୍ତୁ ତାକୁ ନିଦରୁ ଉଠେଇବାକୁ ଦୁଃସାହସ କରି ପାରିଲାନି । ତା'ର ଆଶଙ୍କାଥିଲା ହୁଏତ ଗୁରୁବାରି ଅନ୍ୟମାନଙ୍କ ଭଳି ସ୍ୱାର୍ଥପର ହୋଇଉଠିପାରେ । ତା'ର କର୍ମ ପଥରେ ପ୍ରତିବନ୍ଧକ ହୋଇ ଛିଡା ହୋଇପାରେ । ବରଂ ତା'ର ଅତି ପ୍ରୀୟଜନ ଗୁରୁବାରିଟା ବନ୍ୟାରେ ଭାସିଯାଉ । ତା'ର ଖଣ୍ଡିଆ ନୁଆଁଣିଆ ଚାଳ ଘରଟା ସୁଅ ମୁହଁରେ ନିଶ୍ଚିହ୍ନ ହୋଇଯାଉ । ସେ କିନ୍ତୁ ତା' ଲକ୍ଷ୍ୟ ପଥରୁ ବିଚ୍ୟୁତ ହେବ ନାହିଁ ।

ଏଥର ଗାମୁଛାଟିକୁ ଭଲ କରି ମୁଣ୍ଡରେ ବାନ୍ଧିଲା ଚଇତା । ତା' ଜୀବନର ଅନ୍ତରଙ୍ଗ ସାଥି କୁରାଢୀଟିକୁ କାନ୍ଧରେ ପକାଇ ଡିବିରିଟିକୁ ହାତରେ ଧରି ବାହାରକୁ ବାହାରିଲା । ବାହାରକୁ ଆସିବା ମାତ୍ରେ ଡିବିରିଟି ଫୁସ୍‌କରି ଲିଭିଗଲା ଚଇତାକୁ ପୁଣି ଅନ୍ଧକାର ଗର୍ଭକୁ ଠେଲିଦେଇ । ଚଇତା ଚମକି ଉଠିଲା । ଏ ଅଶୁଭ ସୂଚନା କାହିଁକି ଦେଖାଦେଲା ? ସତରେ କ'ଣ ସେ ତା'ର ଉଦ୍ୟମରେ ଅସଫଳ ହେବ ? ନାଁ, ପୁଣି ସେ ସାହସ ବାନ୍ଧିଲା । ଅଣ୍ଡାଳି ଅଣ୍ଡାଳି ଦିଆସିଲିଟି ଖୋଜି ପାଇବା ପରେ ପୁଣି ଡିବିରି ଲଗାଇଲା । ଏଥର ମଧ ବାହାରକୁ ଆସିବା ମାତ୍ରେ ଡିବିରିଟି ଲିଭିଗଲା । ଚଇତା କିନ୍ତୁ ହତାଶ ହେଲାନି । ପୁଣି ଡିବିରି ଲଗାଇ ହାତ ପାପୁଲି ମଝିରେ ଆଲୋକ ଶିଖାକୁ ପବନ ପ୍ରକୋପରୁ ରକ୍ଷା କରିବାକୁ ଚେଷ୍ଟାକଲା ।

ତଥାପି ବିଫଳ ହେଲା । ପୁଣିଥରେ ଲୁଗାକାନି ଭିତରେ ଆଲୁଅକୁ ବାହାରକୁ ଆଣିବାକୁ ଚେଷ୍ଟାକଲା । ତାହା ମଧ ବିଫଳ ହେଲା । ଏଥର ଚଇତା ବୁଝିଗଲା ଯେ ଭାଗ୍ୟ ତାକୁ ସହଯୋଗ କରିବାକୁ ନାରାଜ । ସେ କିନ୍ତୁ ନିଜ ନିଷ୍ପତ୍ତିରେ ଅଟଳ ।

ଅନ୍ଧକାର ରାତି, ଝିପି ଝିପି ବର୍ଷା, ସୁସୁ ପବନ ଓ ଚକ୍ ଚକ୍ ବିଜୁଳି ସାଙ୍ଗକୁ ନଈର ଘୋ ଘୋ ଗର୍ଜନ ଚଇତା ମନରେ ଭୟ ସଞ୍ଚାର କରିବାକୁ ଉଦ୍ୟମ ଜାରି ରଖିଥାଏ । ତଥାପି ତା'ର କାହାରିକୁ ଖାତିର ନଥାଏ । ସେ ଆଗେଇ ଚାଲିଥାଏ ନଈବନ୍ଧ ଆଡକୁ । ନଈବନ୍ଧ କଡରେ କାହିଁ କେତେ ପୁରୁଷର ଅପନ୍ତରା ଶ୍ମଶାନ । ଏଥର ଶ୍ମଶାନ ଭିତରକୁ ପଶିଲା ଚଇତା । ସେତେବେଳେ ରାସ୍ତାଘାଟ, ନଈକୂଳ, ଶ୍ମଶାନପାଟ ସବୁକିଛି ଶୁନ୍‌ଶାନ । କେବଳ ଗଭୀର ନିଶାର ହୃଦୟ ଥରା ଗର୍ଜନ । ସେଇ ନିର୍ଜନ ପରିବେଶରେ ଏକାକୀ ଚାଲିଛି ଷାଠିଏ ବର୍ଷର ବୃଦ୍ଧ ଚଇତା ଜେନା । କାନ୍ଧରେ ତା'ର ଅନେକ ଦିନର ସାଥି କୁରାଢୀ । ମନରେ ତା'ର ନଥିଲା ନିଜପ୍ରତି ମୋହ, ସଂସାର ପ୍ରତି ମାୟା, ପରିବାର ପ୍ରତି ମମତା, ପରିବେଶ ପ୍ରତି ଗ୍ଲାନି କିମ୍ବା ସମୟ ପ୍ରତି ଭୟ । ବିଜୁଳି ଆଲୋକରେ ସାମ୍ନାରେ ସେ ଲକ୍ଷ୍ୟ କଲା ବହୁ ସଂଖ୍ୟାରେ ମାଟିହାଣ୍ଡି, ଭଙ୍ଗାଝୁଡି ଏବଂ କୋକେଇ ବାଉଁଶ ଖଣ୍ଡ । ଏଥର ଆନନ୍ଦରେ ଗଦ୍‌ଗଦ୍ ହୋଇ ଉଠିଲା ଚଇତାର ମନ, ପ୍ରାଣ, ହୃଦୟ ସବୁକିଛି । କିଛି ହାଣ୍ଡି, ଝୁଡି ଓ ବାଉଁଶ ଖଣ୍ଡ ସଂଗ୍ରହ କରି ଏଥର ବନ୍ଧଉପରକୁ ଉଠିଲା ଚଇତା । ସାମ୍ନାରେ ତା'ର ପ୍ରଳୟ ସୃଷ୍ଟିକାରୀ ନଦୀଜଳର ଉତ୍ତାଳ ତରଙ୍ଗ, ପଛରେ ନିରୀହ ଜନତାର ଆତଙ୍କ ଜନିତ ବିକଳ ଆର୍ତ୍ତ ଚିତ୍କାର, ମୁଣ୍ଡ ଉପରେ ବର୍ଷା, ପବନ ଓ ବିଜୁଳିର ସହ ପ୍ରକୃତିର ତାଣ୍ଡବଲୀଳା ଏବଂ ତା'ର ପାଦତଳେ ଯୁଦ୍ଧ କରି ଥକି ପଡୁଥିବା କମ୍ପିତ ନଦୀବନ୍ଧ । ପ୍ରଚଣ୍ଡ ଉନ୍ମାଦନା ସୃଷ୍ଟି ହେଲା ଚଇତା ମନରେ । ସେ ଉଦ୍‌ଫୁଲ୍ଲିତ ହୋଇଉଠିଲା । ଶତସିଂହର ପରାକ୍ରମ ଭରିଗଲା ତା'ର ଶୁଷ୍କ ମାଂସପେଶୀରେ । ବିଜୁଳି ଆଲୁଅରେ ଚଇତା ଲକ୍ଷ୍ୟକଲା ବରଗଛ ଚେର ଦେଇ ନଦୀବନ୍ଧରେ ପଡିଥିବା ଘୋଳିଆକୁ । ଘୋଳିଆର ଆକାର କ୍ରମଶଃ ବୃଦ୍ଧିପାଇ ସେତେବେଳକୁ ବେଶ୍ ଅଣାୟତ ସ୍ରୋତରେ ପରିଣତ ହେବାକୁ ଲାଗିଥାଏ । ଏଥର ଚଇତା ବନ୍ଧତଳକୁ ଖସି ନଦୀଭିତରେ ପଶିବାକୁ ଲାଗିଲା । ପାଣିଭିତରେ ଅଣ୍ଡାଳି ଅଣ୍ଡାଳି ଘୋଳିଆ ସୃଷ୍ଟିକାରୀ ବରଗଛର ଶକ୍ତ ଚେରଟିକୁ ହାତପାଆନ୍ତାରେ ଠାବକଲା । ତା'ର ଟାଙ୍ଗିଆର ବଜ୍ର ଚୋଟରେ ବରଗଛର ଚେର ସହିତ ନଦୀଜଳର ଉତ୍ତାଳ ତରଙ୍ଗ ମଧ ତ୍ରାହି ତ୍ରାହି ଡାକ ଛାଡିବାକୁ ବାଧ ହେଲେ । ସେତେବେଳକୁ ଚଇତା ନୃସିଂହ ଅବତାରରେ ଅବତୀର୍ଣ୍ଣ ହୋଇସାରିଥାଏ । ବରଗଛ ଚେରର ଅନ୍ତଫାଡି ତାକୁ ବିଭକ୍ତ କରିପକାଉଥାଏ । ନଦୀଜଳରେ ସନ୍ତୁଳିତ ବରଗଛ ଚେର ସଂଲଗ୍ନ ବନ୍ଧର ମାଟିକୁ ନିଜହାତ ପାପୁଲିରେ କାଟି କାଟି ପ୍ରାୟ ତିନିହାତ ପର୍ଯ୍ୟନ୍ତ ଚେରଟିକୁ ମାଟି ଭିତରେ ସେ ପରିଷ୍କାର କରି ପାରିଲା । ଏଥର ପୁଣି ସେ ଚେରଟିକୁ କୁରାଢୀରେ କାଟିବାକୁ ଲାଗିଲା । ତିନି ହାତ ଲମ୍ବର ଚେରକୁ କାଟି ସାରି ନିଜ କାନ୍ଧ ଉପରେ ରଖି ତା'ର ଓଜନ ପରଖିବାକୁ ଚେଷ୍ଟା କଲା ଚଇତା ।

ଏଇମାତ୍ର ସାମାନ୍ୟ ଚେରଖଣ୍ଡେ ଯେ ପ୍ରଳୟ ସୃଷ୍ଟି କରିପାରେ ଏକଥା ଚଇତା ସେତେବେଳେ କଳ୍ପନା କରି ପାରିନଥିଲା । ଆନନ୍ଦରେ ଗଦ୍‌ଗଦ୍ ହୋଇ କାଟିଥିବା ଚେରଖଣ୍ଡକୁ ଚଇତା ନଦୀ ଗର୍ଭକୁ ନିକ୍ଷେପ କଲାବେଳେ ସ୍ୱତଃ ତା' ପାଟିରୁ ବାହରି ଆସିଲା, ''ନେ' ମା' ଏ ରାକ୍ଷସର ଗୋଟାଏ ହାତ କାଟି ତତେ ଭେଟି ଦେଲି । ଏଥର ତୁ ଶାନ୍ତ ହେଇଯାଅ ମା' ।''

ଶ୍ମଶାନ ଭିତରୁ ଗୋଟାଇ ଆଣିଥିବା ବାଇଜି ହାଣ୍ଡିଗୁଡିକୁ ବରଗଛର କଟା ଚେର ପାଖରେ ଗୋଟାକ ପରେ ଗୋଟାଏ ମାଟି ଭିତରେ ପୋତିଦେଲା । ଏଥର ବନ୍ଧଉପରକୁ ଉଠିଆସି ଘୋଳିଆର ସ୍ରୋତକୁ ଲକ୍ଷ୍ୟକଲା । ଜଳସ୍ରୋତ ପ୍ରାୟ ସଂପୂର୍ଣ୍ଣ ଭାବରେ ନିଷ୍ଚିହ୍ନ ହୋଇ ଯାଇଥିଲା ସେତେବେଳକୁ । ଭଙ୍ଗା ଝୁଡି ଓ କୋକେଇ ବାଉଁଶ ଖଣ୍ଡେ ହାତରେ ଧରି ସେ ଛୁଟି ଚାଲିଲା ବନ୍ଧ ତଳକୁ । ବର୍ଷା ଭିଜା ମାଟିକୁ ବାଉଁଶରେ ଖୋଳି ବୋଝ ବୋଝ କରି ମୁଣ୍ଡରେ ମୁଣ୍ଡାଇ ଘୋଳିଆର କ୍ଷୀଣ ସ୍ରୋତ ମୁହଁରେ ସେ ଜମା କରିବାକୁ ଲାଗିଲା । ଏଥର ଘୋଳିଆଟି ସଂପୂର୍ଣ୍ଣ ଭାବରେ ବନ୍ଦ ହୋଇଗଲା । ନଦୀ ବନ୍ଧ ସଂପୂର୍ଣ୍ଣ ବିପଦ ମୁକ୍ତ ହେବା ପର୍ଯ୍ୟନ୍ତ ସାରାରାତି ଅବିଶ୍ରାନ୍ତ ଭାବରେ କୁଢକୁଢ ମାଟି ଜମା କରିବାରେ ଲାଗିଥିଲା ଷାଠିଏ ବର୍ଷ ବୟସ୍କ ବୃଦ୍ଧ ଚଇତା ଜେନା ।

ରାତି ପାହିଯିବା ପରେ ବନ୍ଧ ଉପରେ ହଜାର ହଜାର ହର୍ଷୋତ୍‌ଫୁଲ୍ଲିତ ଜନତାଙ୍କ ଭିଡ ଜମିଥିଲା । ନଦୀର ପ୍ରଚଣ୍ଡ ଜଳରାଶି ପୂର୍ବପରି ଗର୍ଜୁଥିଲା । ଝଡବର୍ଷା ମଧ୍ୟ ଅସ୍ଥିରତା ସୃଷ୍ଟି କରିଚାଲିଥିଲା । ଯୁଦ୍ଧ କ୍ଲାନ୍ତ ନଦୀବନ୍ଧ ଓ ବୃଦ୍ଧ ବରଗଛ ସେମିତି କମ୍ପୁଥିଲେ । ଘୋଳିଆର ଚିହ୍ନବର୍ଣ୍ଣ ନଥିବା ବେଳେ ଚଇତା ଜେନାର ନିଷ୍ପନ୍ଦ ଶରୀରଟା ପଡ଼ିରହିଥିଲା ନଦୀବନ୍ଧର ସେହି ଘୋଳିଆ ପଡ଼ିଥିବା ସ୍ଥାନରେ, ସଦ୍ୟ କୁଢ଼ କରାଯାଇଥିବା ଗଦା ଗଦା ମାଟି ଉପରେ । ଉତ୍‌ଫୁଲ୍ଲିତ ଜନତା ଏହାକୁ ଏକ ଭୌତିକ କାଣ୍ଡର ରଙ୍ଗ ବୋଳୁଥିବା ବେଳେ ବାସୁ ସାହୁ, ହରିବାବୁ , ମହନୀ ଚୌଧୁରୀ ଓ ରାଧୁ ମାଷ୍ଟ୍ରେ ଚଇତା ଜେନାର ପାଦ ପାଖରେ ବସିରହି କାହିଁକି କେଜାଣି ଅନୁତାପ ଅଶ୍ରୁ ଢାଳି ଚାଲିଥିଲେ ।



# ନଖ ଦର୍ପଣ

"ଡର ଲାଗୁଛି ?"

"ନାଁ ।"

"ନିଦ ଲାଗୁଛି ? "

"ନାଁ ।"

" ଭୋକ ଲାଗୁଛି ? "

" ନାଁ ।"

" ତାହେଲେ ଦେଖ୍ ବେଟା, ଖୁବ୍ ଭଲ କରି ଦେଖ ।"

ଗମ୍ଭୀର ଭାବରେ ପ୍ରଶ୍ନ ପଚାରି ଚାଲିଥିଲେ ମହାନ୍ ତାନ୍ତ୍ରିକ ମହାକାଳ ଦାସ । ତାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚାହାଣି ଏବଂ ମନ୍ତ୍ରବଦ୍ଧ ବକ୍‌ଚାତୁରୀ ସେ ଗମ୍ଭୀର ପରିବେଶକୁ ଆହୁରି ଗମ୍ଭୀରତର କରୁଥିଲା । କପାଳରେ ସ୍ୱତନ୍ତ୍ର ଭାବରେ ସଜାଯାଇଥିବା ଲମ୍ବା ସିନ୍ଦୂର କଲି, ଆଖିରେ ପ୍ରଶସ୍ତ କଜ୍ଜ୍ୱଳ ରେଖା, ଆକର୍ଣ୍ଣଲମ୍ବିତ ମୋଟା ମୋଟା ମୋଡାନିଶ; ଆବକ୍ଷଲମ୍ବିତ ରୁଦ୍ରାକ୍ଷମାଳା, ଛ'ଫୁଟ ଉଚ୍ଚତା ବିଶିଷ୍ଟ ହୃଷ୍ଟପୁଷ୍ଟ କୃଷ୍ଣକାୟ ତାନ୍ତ୍ରିକ ମହାକାଳଙ୍କୁ ଏକ ଭୟଙ୍କର ବ୍ୟକ୍ତିତ୍ୱ ଭାବରେ ପ୍ରତିପାଦିତ କରୁଥାଏ ।

ନିଘଞ୍ଚ ଜଙ୍ଗଲ ମଧ୍ୟରେ ଅବସ୍ଥିତ କାଳୀ ମନ୍ଦିରର ପୂଜାମଣ୍ଡପ ଉପରେ ତପସ୍ୱୀ ମୁଦ୍ରାରେ ଉପବିଷ୍ଟ ତନ୍ତ୍ର ସାଧକ ମହାକାଳ ଦାସ । ସାମ୍ନାରେ ବିଭିନ୍ନ ପୂଜା ସାମଗ୍ରୀ, ସିନ୍ଦୁର ମଖା ମଣିଷର ଖପୂରୀ ଏବଂ କାଉଁରୀ ହାଡର କାଠି । ତାକୁ ସାମ୍ନା କରି ବସି ରହିଥାଏ ନିରୀହ ନିଷ୍ପାପ ବାଳକ ଗୋପାଳ । ଝୁଣା,ଗୋଗୁଳ,ଧୂପ, ଦୀପର ଉତ୍କଟ ଗନ୍ଧରେ ମୋହିତ ଗୋପାଳର ଆଖିପତା ପଡିପଡି ଆସୁଥିଲେ ମଧ୍ୟ ସେଭଳି ଭୟଙ୍କର ପରିବେଶରେ ସେ ଆଖି ଖୋଲା ରଖିବାକୁ ବାଧ୍ୟ ହେଉଥାଏ । ପୂଜାମଣ୍ଡପର ଅଳ୍ପଦୂରରେ ଯୋଡ ହସ୍ତରେ ବସି ରହିଥିଲେ କରୁଣାକର ଏବଂ ପତ୍ନୀ ସୁରମା ।

କରୁଣାକର ଜଣେ ଆଦର୍ଶ ଶିକ୍ଷକ । ଧୈର୍ଯ୍ୟଶୀଳ, ମିଷ୍ଟଭାଷୀ, ଅତିମାତ୍ରାରେ ଇଶ୍ୱର ବିଶ୍ୱାସୀ । ବିଶେଷ କରି ମନ୍ତ୍ର ତନ୍ତ୍ର ବିଦ୍ୟା ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । ସାଧୁ, ସନ୍ୟାସୀ, ବ୍ରାହ୍ମଣ, ତାନ୍ତ୍ରିକମାନଙ୍କୁ ଦେଖିବାମାତ୍ରେ ସାଷ୍ଟାଙ୍ଗ ପ୍ରଣିପାତ କରିବାରେ ତାଙ୍କର ତିଳେମାତ୍ର କୁଣ୍ଠା ନଥାଏ । ସୁରମାଙ୍କ ପ୍ରକୃତି କିନ୍ତୁ ଠିକ୍ ଓଲଟା । ସେ କୌଣସି କଥାକୁ କିମ୍ବା ବ୍ୟକ୍ତିକୁ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ସହଜରେ ବିଶ୍ୱାସ କରିପାରନ୍ତି ନାହିଁ । ମାମୁଁ, ମାଇଁ ଦୁଇ ପ୍ରାଣୀଙ୍କ ବ୍ୟତୀତ ନିଜର ବୋଲି କେହି ଏ ସଂସାରରେ ନାହାନ୍ତି । କୋଳରେ ପିଲାଟିଏ ପାଇବା ପାଇଁ ଅକ୍ଳାନ୍ତ ଚେଷ୍ଟା କରିଛନ୍ତି ଉଭୟ । ବିବାହର ସାତବର୍ଷ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଅପେକ୍ଷା କଲାପରେ ସୁରମା ଅତିଷ୍ଠ ହୋଇ ଉଠିଥିଲେ । ତା'ପରେ ଚାଲିଲା ଡାକ୍ତରୀ ଚିକିତ୍ସା । ଗାଁ

କବିରାଜଙ୍କଠାରୁ ଆରମ୍ଭ କରି କଲିକତାରେ ସ୍ତ୍ରୀରୋଗ ବିଭାଗ ପ୍ରଫେସର ପର୍ଯ୍ୟନ୍ତ ଯେତେ ଡାକ୍ତରଙ୍କୁ ପରାମର୍ଶ କରାଯାଇଛି, ତା' ର ସଠିକ ହିସାବ ଏବେ ମିଳିବା କଷ୍ଟକର । ବିଭିନ୍ନ ପ୍ରକାର ପରୀକ୍ଷା ନିରୀକ୍ଷା କରାଯାଇ ସବୁପ୍ରକାର ସମ୍ଭାବ୍ୟ ଚିକିତ୍ସା କରିବାରେ କରୁଣାକର କୌଣସି ତ୍ରୁଟି କରିନାହାଁନ୍ତି । କିନ୍ତୁ ଶେଷକୁ ନିରାଶ ହେବାକୁ ହେଲା । ଦୀର୍ଘ ପାଞ୍ଚବର୍ଷର ଚିକିତ୍ସାପରେ ସୁରମାଙ୍କ ପିଠି ଥାପୁଡେଇ ପ୍ରଫେସର ଶେଷରେ ନିରାଶ ବାଣୀ ଶୁଣେଇ ଦେଇଥିଲେ । ସେଦିନ ଖୁବ୍ କାନ୍ଦିଥିଲା ସୁରମା । ସୁରମାଙ୍କ କାନ୍ଦ ସହିତ ତାଳ ମିଳାଇ କରୁଣାକର ମଧ୍ୟ ଆଖିରୁ ସବୁତକ ଲୁହ ନିଗାଡି ଦେଇଥିଲେ ପ୍ରଫେସରଙ୍କ ଚାମ୍ବରରେ ।

"ତଥାପି ଧୈର୍ଯ୍ୟ ରଖ । ଈଶ୍ୱର ଚାହିଁଲେ ହୁଏତ ତୁମକୁ ସାହାଯ୍ୟ କରିପାରନ୍ତି ।" ଆଶ୍ୱାସନା ବାଣୀ ଶୁଣେଇଲେ ପ୍ରଫେସର ।

" ଈଶ୍ୱର ଯଦି ପିଲା କରିଦେଇ ପାରୁଥାନ୍ତେ, ତା'ହେଲେ ନାଁ ଆଜି ଏ ମେଡିକାଲ୍ ସାଇନ୍ସ୍ ଥାଆନ୍ତା ନାଁ ଆପଣମାନେ ଡାକ୍ତର ହେବାର ଆବଶ୍ୟକତା ପଡିଥାନ୍ତା ।" ଦୁଃଖ ମିଶା ହସଟାଏ ହସି ଦେଇ ସୁରମା ସ୍ପଷ୍ଟଭାବରେ କହି ପକାଇଲେ ।

"ତମେ ହତାସ ହୁଅନି ସୁରମା । ଡାକ୍ତରମାନଙ୍କ ପାଖରୁ ଫେଲ୍ ମାରିବା ପରେ ମଧ୍ୟ ଈଶ୍ୱରଙ୍କ କୃପାରୁ ପିଲାପିଲି ହେଇଥିବାର ଅନେକ ଦୃଷ୍ଟାନ୍ତ ରହିଛି । ଆମେ ସେ ବାଟରେ ଆଉ କିଛିଦିନ ଚେଷ୍ଟା କରିବା । " କରୁଣାକର ବୁଝାଇବାକୁ ଚେଷ୍ଟା କଲେ ଧୈର୍ଯ୍ୟହରା ସୁରମାଙ୍କୁ ।

"ସ୍ୱାମୀର ବିନା ସାହାଯ୍ୟରେ ଯଦି ଈଶ୍ୱର ପିଲାପିଲି ସୃଷ୍ଟିକରି ପାରୁଥାନ୍ତେ, ତାହେଲେ ସବୁ ପୁରୁଷ ନପୁଂସକ ହୋଇ ବୁଲିବାରେ କିଛି ଅସୁବିଧା ନଥିଲା ।"। ସୁରମାର ସ୍ପଷ୍ଟବାଦିତାରେ କରୁଣାକର ଯେତିକି ଲଜ୍ଜିତ ହୋଇଥିଲେ, ପ୍ରଫେସର ସେତିକି ଆଶ୍ଚର୍ଯ୍ୟ ହୋଇଥିଲେ ।

ଘରକୁ ଫେରି ଆସିବା ପରେ ହତାଶ କରୁଣାକରଙ୍କୁ ପିଲାଟିଏ ପାଇବା ଉଦ୍ଦେଶ୍ୟରେ ଅନ୍ୟ ଚେଷ୍ଟା କରିବା ପାଇଁ ସୁରମାଙ୍କୁ ରାଜି କରାଇବାକୁ କମ୍ ପରିଶ୍ରମ କରିବାକୁ ପଡିନଥିଲା ।ଶେଷରେ ବାଧ୍ୟ ହୋଇ ନାସ୍ତିକ ସୁରମା ରାଜି ହୋଇଥିଲେ ସ୍ୱାମୀଙ୍କ ପ୍ରସ୍ତାବରେ। ତା'ପରେ ଚାଲିଲା ପୂଜାପାଠ, ଦାନଧର୍ମ,ମନ୍ତ୍ରତନ୍ତ୍ର ଇତ୍ୟାଦି ଇତ୍ୟାଦି । ଦିନ ପରେ ଦିନ ଉପବାସ କରି ନିଜ ଆତ୍ମାକୁ ଯନ୍ତ୍ରଣା ଦେବାଠୁ ଆରମ୍ଭ କରି ଦେବୀପୀଠରେ ପଶୁବଳି ଦେଇ ଜଘନ୍ୟ ଜୀବହତ୍ୟା କରିବା ପର୍ଯ୍ୟନ୍ତ ଯେତେସବୁ ଅମାନୁଷିକ କାର୍ଯ୍ୟ କରିବାକୁ କରୁଣାକର ପଛେଇ ଯାଇନଥିଲେ । ସୁରମାଙ୍କର ସେସବୁ କାର୍ଯ୍ୟରେ ସ୍ୱୀକୃତି ନଥିଲେ ମଧ୍ୟ ନୀରବ ସମର୍ଥନ ଦେବାକୁ ବାଧ୍ୟ ହେଉଥିଲେ, କେବଳ ସ୍ୱାମୀଙ୍କ ପ୍ରଚେଷ୍ଟାକୁ ସମ୍ମାନ ଜଣାଇ । ବର୍ଷ ପରେ ବର୍ଷ ବିତିଯାଇ ଯଥେଷ୍ଟ ଅର୍ଥହାନୀ ଓ ପ୍ରାଣପୀଡାକୁ ସହ୍ୟ କରିବା ପରେ କରୁଣାକର ନିରାଶ ହୋଇ ପଡିଥିଲେ ।

''କ'ଣ ଏଥର ମନ ମାନିଲା ତ ? ନା' ଅର୍ଥ ଶ୍ରାଦ୍ଧ କରିବାକୁ ଆଉ କିଛି ନୂଆ ବାଟ ଖୋଜିବ ?'' ସୁରମାଙ୍କ ପ୍ରଶ୍ନର କୌଣସି ଉତ୍ତର ଦେଇପାରି ନଥିଲେ ନୈରାଶ୍ୟ ଯନ୍ତ୍ରଣା ଜର୍ଜରିତ କରୁଣାକର । ତାଙ୍କ ଆଖି କୋଣରୁ କେବଳ ଦୁଇଧାର ଅଶ୍ରୁ ନିଗିଡ଼ି ପଡ଼ି ଓଠ ପର୍ଯ୍ୟନ୍ତ ବୋହି ଆସିଥିଲା ।

ସୁରମାଙ୍କ ଅଶାନ୍ତ ହୃଦୟକୁ ଶାନ୍ତ କରାଇବା ପାଇଁ, ତାଙ୍କର ଅବୁଝା ମନକୁ ବୁଝାବଣାର ରାସ୍ତା ଦେଖାଇବା ପାଇଁ ଆପ୍ରାଣ ଉଦ୍ୟମ କରିଛନ୍ତି କରୁଣାକର । ସ୍ତ୍ରୀ ପ୍ରତି ଯେତେ ପ୍ରକାର ନିଷ୍ଠାପର କର୍ତ୍ତବ୍ୟ କରିବା କଥା କୌଣସି କାର୍ଯ୍ୟରେ ତ୍ରୁଟି କରିନଥିଲେ ସେ ।

'' ସୁରମା''

''କ'ଣ ହେଲା ?'' ରୋଷେଇଶାଳରୁ ଜବାବ୍ ଦେଲେ ସୁରମା ।

'' ଆରେ ଏଠିକି ଆସ । ଦେଖିଲ, ତମ ପାଇଁ କ'ଣ ଆଣିଛି ?'' ଖୁସି ମିଜାଜ୍‌ରେ ଡାକିଲେ କରୁଣାକର । ପଣତ କାନିରେ ହାତ ପୋଛି ପୋଛି ରୋଷେଇଶାଳରୁ ବାହାରି ଆସିଲେ ସୁରମା । ପକେଟରୁ ଗୋଟାଏ ସୁନ୍ଦର ମଣିପୁରୀ ସୁନାହାର ବାହାରକରି ସୁରମାଙ୍କ ହାତକୁ ବଢେଇ ଦେଲେ କରୁଣାକର ।

''ପିନ୍ଧିଲ ଦେଖି, ତମକୁ କେମିତି ମାନୁଛି ଦେଖେ ।''

କିଛି ଉତ୍ତର ନଦେଇ ହାରଟିକୁ ପରୀକ୍ଷା କରି ଦେଖୁଥିଲେ ସୁରମା ।

''ଆରେ, ଏତେ ଦେଖୁଛ କ'ଣ ମ ? ଅଢେଇ ଭରୀର ହାରଟା ଅଛି । କ'ଣ ପସନ୍ଦ ହଉନି ?''

'' ଏ ହାରଟା ପିନ୍ଧିଲେ କ'ଣ ପୁଅ ହବ ? '' କରୁଣାକରଙ୍କ ମୁହଁକୁ ସିଧାସଳଖ ଚାହିଁ ପ୍ରଶ୍ନ କଲେ ସୁରମା ? କରୁଣାକରଙ୍କ ମନ ଭିତରେ ଉଠି ଆସୁଥିବା ଅଗ୍ରହର ଜୁଆଳରେ ହଠାତ୍ ଭଙ୍ଗା ପଡିଗଲା । ହତବମ୍ବ ହୋଇ ସେ ଛିଡା ଛିଡା ପଢ଼ିବାକୁ ଚେଷ୍ଟା କରୁଥିଲେ ସୁରମାଙ୍କ ମନସ୍ତତ୍ତ୍ୱ ପୁସ୍ତକର ପୃଷ୍ଠାଗଡିକୁ ।

'' କ'ଣ ମନ କଷ୍ଟ କଲ ? ତୁମେ ହାରଟା କିଣି ଆଣିଛ ଯେତେବେଳେ ମୁଁ ନିଶ୍ଚୟ ପିନ୍ଧିବି, କିନ୍ତୁ ଅଯଥାରେ ଏତେ ଗୁଡା ଟଙ୍କା ଖର୍ଚ୍ଚ କରିବାର କ'ଣ ଆବଶ୍ୟକତା ଥିଲା ?'' ପରିବେଶକୁ ଟିକିଏ ହାଲ୍‌କା କରିବାକୁ ନିରବତା ଭାଙ୍ଗି ପ୍ରଶ୍ନ କଲେ ସୁରମା ।

'' କାହା ପାଇଁ ଆଉ ବା ଧନ ସଞ୍ଚିବି ?'' ଏତେ ଦୁଃଖ ସତ୍ତ୍ୱେ କରୁଣାକର ସରଳ ହସଟିଏ ହସିବାକୁ ଚେଷ୍ଟା କରୁଥିଲେ ।

ସ୍ୱାମୀଙ୍କ ସ୍ନେହ ଶ୍ରଦ୍ଧାକୁ ସମ୍ମାନ ଜଣାଇ ସେହି ଦିନଠାରୁ ନିଜର ଅନିଚ୍ଛା ସତ୍ତ୍ୱେ ସୁରମା ସେ ହାରଟିକୁ ନିଜ ବେକରେ ଝୁଲାଇ ରଖିଥାନ୍ତି, ନିଃସନ୍ତାନ ଦୁଃଖରୁ କରୁଣାକରଙ୍କୁ କିଛି ମାତ୍ରାରେ ଦୂରେଇ ରଖିବାକୁ । କେବେ କେମିତି ହାରଟି ଖୋଲି ନିଜ ହାତ ବାକ୍ସରେ ରଖୁଥିଲେ ମଧ୍ୟ ଅଧିକାଂଶ ସମୟ ସେଇଟି ପିନ୍ଧିବାକୁ ପଡୁଥିଲା ସୁରମାଙ୍କୁ । କାରଣ,

ହାରଟି ସୁରମାଙ୍କ ବେକକୁ ଯେତିକି ମାନୁଥିଲା, ହାରଟି ପିନ୍ଧିଥିବାର ଦେଖିଲେ କରୁଣାକରଙ୍କୁ ସେତିକି ଆନନ୍ଦ ଦେଉଥିଲା ।

ଦିନେ କରୁଣାକର ସ୍କୁଲରୁ ଫେରି ଦେଖନ୍ତି ତ ସୁରମା ବିଛଣାରେ ମୁହଁ ମାଡି ଶୋଇରହି ଧକେଇ ଧକେଇ କାନ୍ଦୁଛନ୍ତି ।

" କ'ଣ ହେଲା ସୁରମା ?" ବ୍ୟସ୍ତ ହୋଇପଡିଲେ କରୁଣାକର ।

ସୁରମା ଆହୁରି ଜୋରରେ କାନ୍ଦିବାକୁ ଲାଗିଲେ ସିନା କିଛି କହିପାରିଲେନି ।

" କ'ଣ ଅସୁବିଧା ହୋଇଛି କୁହ ? ନ କହିଲେ ଜାଣିବି କେମିତି ?"

ସୁରମାଙ୍କ ମୁଣ୍ଡ ଆଉଁସି ଦେଇ ପ୍ରଶ୍ନ କଲେ କରୁଣାକର ।

" ମଣିପୁରୀ ସୁନାହାରଟା ଖୋଜି ଖୋଜି ମୁଁ ପାଉନି ।"

ସୁରମାଙ୍କ ଉତ୍ତରରେ ସ୍ତବ୍ଧ ହୋଇ ଯାଇଥିଲେ କରୁଣାକର । ନିଜର କଷ୍ଟ ଅର୍ଜିତ ଏତେଗୁଡ଼ାଏ ସଞ୍ଚୟ ଯେ ଏମିତି ଭାବରେ ଦିନେ ନିରୁଦ୍ଦିଷ୍ଟ ହୋଇଯିବ, ଏକଥା ସେ କେବେ ଚିନ୍ତାକରି ପାରି ନଥିଲେ ।

" ମୁଁ ଭାବୁଛି ତୁମେ ଥାନାରେ ଜଣାଇଦିଅ । ପୋଲିସ ଆସିଲେ ହାରଟା ନିଶ୍ଚୟ ଖୋଜିଦେଇ ପାରିବ ।"

"ସେ ଯୁଗର ପୋଲିସ ଆଜି ଆଉ ନାହାନ୍ତି ସୁରମା । ଏବେ ତ ଚୋର ପୋଲିସ କୋଳାକୋଳି । ତମେ କେବେ ଶୁଣିଛ ଆଜି କାଲି ପୋଲିସ କେଉଁଠି ଚୋରି ଜିନିଷ ଖୋଜି ଆଣି ଦେଇଛି । କେବଳ ମନସ୍ତାପ ପ୍ରାଣପୀଡା ହିଁ ସାର ହେବ ।"

"ତଥାପି ଥରେ ଚେଷ୍ଟାକରି ଦେଖାଯାଉ । କାଳେ ଯଦି ଆମ ଭାଗ୍ୟକୁ ମିଳିଯିବ ।"

ନିଜର ଅନିଚ୍ଛା ସତ୍ତ୍ୱେ ସୁରମାଙ୍କ ପ୍ରସ୍ତାବକୁ ଗ୍ରହଣ କରି ଅଖିଆ ଅପିଆ ଥାନାକୁ ଦୌଡ଼ିଲେ କରୁଣାକର । ପରଦିନ ସକାଳୁ ପୋଲିସ ଗାଁକୁ ଆସି ରାଜକୀୟ ଠାଣିରେ ଅନୁସନ୍ଧାନ ଆରମ୍ଭ କଲେ । ପୋଲିସ ବାଲାଙ୍କୁ ଖାଇବା ପିଇବା ଏବଂ ହାତଗୁଞ୍ଜା ଇତ୍ୟାଦିରେ ସନ୍ତୁଷ୍ଟ କରି ହାରଟି ଫେରିପାଇବା ଆଶାରେ ଆତ୍ମସନ୍ତୋଷ ଲାଭକଲେ କରୁଣାକର ।

" ମୁଁ ଚେଷ୍ଟା କରୁଛି । ବ୍ୟସ୍ତ ହୁଅନି । କାଲି ମତେ ଥାନାରେ ଦେଖାକରିବ ।" ଆଶ୍ୱାସନା ବାଣୀ ଶୁଣେଇ ପୋଲିସ ଫେରିଯାଇ ଥିଲା ତା' ବାଟ୍‌ରେ ।

ଦୀର୍ଘ ସାତଦିନ ପର୍ଯ୍ୟନ୍ତ ଥାନାକୁ ଦୌଡି ଦୌଡି ଅତ୍ୟନ୍ତ ବିରକ୍ତିର ସହ ନୀରବ ରହିବାକୁ ବାଧ୍ୟ ହେଲେ କରୁଣାକର । ତଥାପି ଏତେବଡ ଦାମିକା ପଦାର୍ଥଟାର ମୋହ କିଏ ବା ଛାଡିପାରନ୍ତା ?

" ସୁରମା, ଶୁଣିଲି ନରଣପୁର ଗାଁରେ ଜଣେ କାଳୀସାଧକ ତାନ୍ତ୍ରିକ ଅଛନ୍ତି । ସେ ତନ୍ତ୍ରବଳରେ ଚୋର ଧରିବାଠୁ ଆରମ୍ଭ କରି ବିଭିନ୍ନ ସମସ୍ୟାର ପ୍ରତିକାର କରିପାରୁଛନ୍ତି । ଭାବୁଛି ତାଙ୍କ ପାଖକୁ ଥରେ ଯିବି । " କରୁଣାକର ପ୍ରସ୍ତାବଟିଏ ଉପସ୍ଥାପନ କଲେ ।

" ତୁମର କ'ଣ ମନ୍ତ୍ର-ତନ୍ତ୍ର ଉପରୁ ଏ ପର୍ଯ୍ୟନ୍ତ ବିଶ୍ୱାସ ତୁଟିନି ? କାହିଁକି ଅଯଥା ପୁଣି ଅର୍ଥଶ୍ରାଦ୍ଧ କରିବ ? ଯାହା ତ ହେବାରେ ହେଲା । ଆମର ଭାଗ୍ୟ ତ ଛୋଟ । ଏଥର ଚୁପଚାପ୍ ଘରେ ବସ । " ନାସ୍ତିବାଣୀ ଶୁଣେଇ ଦେଲେ ସୁରମା ।

"ତଥାପି କାହିଁକି ମୋ ମନ କହୁଛି କିଛି ଗୋଟାଏ ହେଇପାରେ । ଏଇଥରଟା ଶେଷ ଚେଷ୍ଟା କରାଯାଉ " ସ୍ୱାମୀଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ସୁରମା ନୀରବ ରହିବାକୁ ବାଧ୍ୟ ହେଲେ ।

ପରଦିନ ରାତି ନପାହୁଣୁ କରୁଣାକର ବାହରିଗଲେ ନରଣପୁର ଉଦ୍ଦେଶ୍ୟରେ । ସାରା ଦିନ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି ସୁରମା । ମୁହଁ ସଞ୍ଜବେଳକୁ ଫେରି ଆସିଲେ କରୁଣାକର । ସ୍ୱାମୀଙ୍କ ମିଜାଜଟା ଖୁସି ଖୁସି ଲାଗୁଥାଏ ସୁରମାକୁ ।

" କ'ଣ ହେଲା ?" ତା' କପଟା ବଢେଇ ଦେଇ ପ୍ରଶ୍ନ କଲେ ସୁରମା ।

" ଚୋର ଧରି ଦେବ ବୋଲି ତ ଗ୍ୟାରେଣ୍ଟି ଦେଉଛି । କିନ୍ତୁ..."

" ପୁଣି କିନ୍ତୁ କ'ଣ ?"

ଚିଠାଟିଏ ପକେଟରୁ ବାହାରକରି ସୁରମାଙ୍କ ହାତକୁ ବଢେଇ ଦେଲେ । ଲମ୍ବା ଚିଠାଟି ପଢୁ ପଢୁ ମନେ ମନେ ହସୁଥିଲେ ସୁରମା । ନଡିଆ ସାତଟା, ଗୋଟା ଗୁଆ ସାତଟା, ଗୋଟା ଟଙ୍କା ସାତଟା, ଗୋଟା ଅରୁଆ ଚାଉଳ ସାତ ସେର, ଖାଣ୍ଟିଗୁଆ ଘିଅ ସାତ ପା' , କଞ୍ଚାକଦଳୀ ସାତଟା, ରକ୍ତ ମନ୍ଦାର ଫୁଲ ସାତଟା, ଏମିତି ଆହୁରି ବହୁତ ସାତ ସଂଖ୍ୟା ବିଶିଷ୍ଟ ପଦାର୍ଥମାନ ।

" ଚିଠା ଅନୁସାରେ ତ ଜିନିଷ ମିଳିଯିବ । କିନ୍ତୁ ଚିଠା ବାହାରେ ଯେଉଁ ଜିନିଷ, ସେଇଟା ମିଳିବା କଷ୍ଟକର ।"

" ସେଇଟା ପୁଣି କ'ଣ " ପ୍ରଶ୍ନ କଲେ ସୁରମା ।

" ଗୋଟାଏ ପିଲା ଖୋଜିବାକୁ ପଡିବ । ବାହ୍ମଣ ପିଲା ହୋଇଥିବ , ବ୍ରତ ହୋଇ ନଥିବ, ବାର ବର୍ଷରୁ କମ୍ ହୋଇଥିବ, ଗୌର ବର୍ଣ୍ଣ ଥିବ, ଅତି ଶାନ୍ତ ଶିଷ୍ଟ ହୋଇଥିବ,ଦେହରେ କୌଣସି କ୍ଷତ ଚିହ୍ନ ନଥିବ, ଗାଁର ସମସ୍ତ ଲୋକଙ୍କୁ ଚିହ୍ନି ପାରୁଥିବ । ଏଭଳି ଗୋଟାଏ ପିଲା ଖୋଜିବା ବର୍ତ୍ତମାନ ସମସ୍ୟା ।"

" କ'ଣ କାଳୀଙ୍କ ପାଖରେ ବଳି ପକାଇବା ନା କ'ଣ ?

" ଧେତ୍, ତମକୁ ତ ସବୁକଥା ଥଟ୍ଟା ପରିହାସ ଲାଗିଚି " । ତା' କପଟି ତଳେ ରଖି ଘର ଭିତରକୁ ପଶିଗଲେ କରୁଣାକର ।

ପରିଦିନ ସକାଳୁ ତାନ୍ତ୍ରିକଙ୍କ ବରାଦ ମୁତାବକ ପିଲାଟିର ସନ୍ଧାନ ପାଇଁ କରୁଣାକର ଗାଁ ଆଡେ ମୁହାଁଇଲେ । ବହୁ ଅନୁସନ୍ଧାନ ପରେ ସମସ୍ତ ଲକ୍ଷଣଯୁକ୍ତ ବାର ବର୍ଷ ବୟସ୍କ ଗୋପାଳକୁ ହିଁ ଠାବ କଲେ ଏବଂ ତା' ବାପ ମା'ଙ୍କୁ ବହୁ ଅନୁନୟ କରି ସାଙ୍ଗରେ ନେଇ ତାନ୍ତ୍ରିକ ନିକଟକୁ ଯିବା ପାଇଁ ରାଜି କରାଇଲେ । କରୁଣାକର ଜାଣିଥିଲେ ବାବାଜୀ,

ତାନ୍ତ୍ରିକମାନଙ୍କ ଉପରେ ସୁରମାର ଧାରଣା ଅତି କଦର୍ଯ୍ୟ । ତଥାପି ସୁରମାଙ୍କୁ ସାଥିରେ ନେବା ପାଇଁ ସେ ଏକ ପ୍ରକାର ବାଧ୍ୟ କରିଥିଲେ, ଯେହେତୁ ଏକ ଅଙ୍ଗରେ କାଳୀଙ୍କ ପୂଜା ସଂପୂର୍ଣ୍ଣ ହୁଏ ନାହିଁ ।

ସମସ୍ତ ପୂଜାପାଠ ଶେଷ ହୋଇଯିବା ପରେ ତାନ୍ତ୍ରିକ ମହାକାଳ ଦାସଙ୍କୁ ସାମ୍ନାକରି ବସିଥିବା ଗୋପାଳର ଡାହାଣ ହାତର ବୃଦ୍ଧାଙ୍ଗୁଳି ନଖ ଉପରେ ଏକ କଳାରଙ୍ଗର ପ୍ରଲେପ ଲଗାଇ ଦିଆଗଲା । ଏଥର ନଖଟା ତା'ର ଅଇନା ପରି ଚକ୍ ଚକ୍ କରିବାକୁ ଲାଗିଲା ।

"ଦେଖ୍ ବେଟା, ଏଥର ଭଲକରି ଦେଖ୍ ।" "ଗମ୍ଭୀର କଣ୍ଠରେ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ପ୍ରଶ୍ନ କରି ଚାଲିଥିଲା ମହାକାଳ ।

ଗୋପାଳ ଆଉଥରେ କଳା ରଙ୍ଗ ମଖା ନିଜର ଚକ୍ ଚକ୍ ନଖକୁ ଭଲ କରି ନିରୀକ୍ଷଣ କଲା ।

"କିଛି ଡରିବାର ନାହିଁ । କହ, କ'ଣ ଦେଖୁଛୁ ?"

" ମୁହଁ " ଥଙ୍ଗ ଥଙ୍ଗ ହୋଇ ଉତ୍ତର ଦେଲା ଗୋପାଳ ।

"ପୁରୁଷ ମୁହଁ ନା ସ୍ତ୍ରୀ ମୁହଁ ।"

" ପୁଅ ପିଲାର ।"

" ନିଶ ଅଛି ?"

" ନାଁ "

ଗୋପାଳର ଉତ୍ତରରେ ଉତ୍‌ଫୁଲ୍ଲିତ ହୋଇ ବିଜୟ ଗର୍ବରେ ମହାକାଳ କଣେଇ କଣେଇ ଲକ୍ଷ କରୁଥାଏ ସୁରମା ଓ କରୁଣାକରଙ୍କୁ । କରୁଣାକର ମନେ ମନେ ଆନନ୍ଦିତ ହେଉଥାନ୍ତି ଏଇଥି ପାଇଁ ଯେ ଏ କାମ ପାଇଁ ଗୋପାଳ ପରି ପିଲାକୁ ବାଛି ନିଶ୍ଚିତ ଭାବରେ ସେ ବୁଦ୍ଧିମାନର କାର୍ଯ୍ୟକରିଛନ୍ତି । ନଖ ଦର୍ପଣରେ ଗୋପାଳ ସେହି ହାର ଚୋରକୁ ନିଶ୍ଚିତ ଭାବରେ ଚିହ୍ନି ସାରିଲାଣି । କେବଳ ଯାହା ପ୍ରକାଶ କରିବା ହିଁ ବାକି ଅଛି । ଯାହାହେଉ ଏଥର ଚୋର ଚିହ୍ନା ପଡିଯିବ, ହାରଟା ମଧ୍ୟ ମିଳିଯିବ ଏବଂ ସବୁଠୁ ବଡ କଥା ହେବ ଅବିଶ୍ୱାସର ବାତାବରଣରେ ଅଣନିଶ୍ୱାସୀ ହୋଇ ପଡିଥିବା ସୁରମାକୁ ବିଶ୍ୱାସର ମୁକ୍ତବାୟୁ ସେବନ କରାଇବାରେ ସେ ସକ୍ଷମ ହୋଇ ପାରିବେ । ସୁରମା କିନ୍ତୁ ନିର୍ବିକାର ଭାବରେ ସେମିତି ବସି ରହିଥାନ୍ତି ଅନ୍ୟମନସ୍କ ହୋଇ ।

" ତା' ହେଲେ କହ ବେଟା, ସେ ମୁଁହଟା କାହାର ?" ମହାକାଳ ସ୍ମିତ ହସି ମନାନିଲା ।

ଗୋପାଳ ନୀରବ ।

" କହ, ସେ ମୁଁହଟା ତୁମ ଗାଁର କେଉଁ ଲୋକର ମୁହଁ ?"

" ସେଇଟା ମୋରି ମୁହଁ ?" ଗୋପାଳର କଣ୍ଠ ଭୟରେ ଥରୁଥିଲା ।

ହଠାତ୍ ଗମ୍ଭୀର ହୋଇଗଲା ମହାକାଳ, ଗମ୍ଭୀର ହୋଇଗଲେ କରୁଣାକର ସ୍ୱୟଂ। କରୁଣାକରଙ୍କ ସ୍ୱପ୍ନ ଦଗ୍ଧ ବହୁତଳ ବିଶିଷ୍ଟ ଅଟ୍ଟାଳିକା ଅକାଳ ଭୂମିକମ୍ପରେ ଖଣ୍ଡ ବିଖଣ୍ଡିତ ହୋଇ ଭୂଲୁଣ୍ଠିତ ହେବାକୁ ଲାଗିଲା । ମହାକାଳର ଚକ୍ଷୁ ବିସ୍ତାରିତ ହେଲା, ଭ୍ରୂକୁଞ୍ଚିତ ହେଲା, କଣ୍ଠ ବଜ୍ର ଗମ୍ଭୀର ହେଲା, ଉର୍ଦ୍ଧ୍ୱ ଶ୍ୱାସ ପ୍ରଖରତର ହେଲା ।

"ଆଉ ଥରେ ଭଲକରି ଦେଖ୍ । ସାମ୍ନାରେ ତୋର ମହାକାଳୀ । ବଦମାସି କଲେ ମୁଣ୍ଡ ମୋଡି ଦେବ, ସବୁ ରକ୍ତ ଶୋଷି ନେବ । ଠିକ୍ କରି କହ ।"

ଗୋପାଳ ଏଥର ଆହୁରି ଜୋରରେ ଥରିବାକୁ ଲାଗିଲା ।

" କହ, ଠିକ୍ କରି କହ । କାହା ମୁହଁ ଦେଖୁଛୁ ?" ମହାକାଳର ମୁଖମଣ୍ଡଳ ଆହୁରି ବିକୃତ, ଆହୁରି ଭୟଙ୍କର ହୋଇଉଠିଲା । ନିରୀହ ନିଷ୍ପାପ ବାଳକ ଗୋପାଳର ଶକ୍ତି କାହିଁ ସେ ଭୟଙ୍କର ରୂପକୁ ସାମ୍ନା କରିବାକୁ । ତା'ର ଦୃଷ୍ଟି ନିବଦ୍ଧ ଥାଏ କେବଳ ଗୋଟିଏ ସ୍ଥାନରେ । ଆଇନା ଭଳି ଚକ୍ ଚକ୍ କରୁଥିବା ନଖ ଉପରେ ପ୍ରତିଫଳିତ ତା'ରି ନିଜର ଶୁଖିଲା ମୁହଁଟି ତାକୁ ଜଳଜଳ କରି ଦିଶୁଥାଏ ।

" ଏଇଟା ତ ମୋରି ମୁହଁ ମାଉସୀ । " ସୁରମାକୁ ଚାହିଁ ଭେଁ ଭେଁ କରି କାନ୍ଦିବାକୁ ଲାଗିଲା ଗୋପାଳ । ସେ ଭୟରେ ତାନ୍ତ୍ରିକ ମହାକାଳକୁ ଚାହିଁବାକୁ ସାହାସ କରିପାରୁ ନଥାଏ । ଗୋପାଳର କାନ୍ଦରେ ସୁରମାର ଅନ୍ୟମନସ୍କ ଭାବ ଦୂରେଇ ଗଲା । ସେ ବ୍ୟସ୍ତ ହୋଇ ଉଠିଲେ । ସେ ଅନୁଭବ କରୁଥିଲେ ସତେ ଯେମିତି ତାଙ୍କରି ନିଜର ସନ୍ତାନ ମହାବଳ ବାଘ ହାବୁଡରୁ ରକ୍ଷା ପାଇବାକୁ ବିକଳ ଚିତ୍କାର କରୁଛି ।

" ଭାଗ୍, ଶାଲା ଶୋର୍‌କା ବଚ୍ଚା । ତମର ବି କାଣ୍ଡଜ୍ଞାନ ନାହିଁ, ଗୋଟାଏ ଜନ୍ମ ବାଳୁଙ୍ଗାକୁ ଧରି ଆଣିଚ ମହାକାଳ ତାନ୍ତ୍ରିକ ପାଖକୁ ? ଯାଓ, ଭାଗୋ ୟହାଁସେ । "

ମହାକାଳର " ଭାଗ୍ " ଶବ୍ଦଟା ଏତେ କର୍କଷ, ଏତେ ତୀବ୍ରତର ଥିଲା ଯେ ବାଳକ ଗୋପାଳ ଗୋଟାଏ ଶକ୍ତ ବିଜୁଳି ଧକ୍କା ଖାଇବା ପରି ଅନୁଭବ କରିବା ସଂଗେ ସଂଗେ ଚିତ୍କାର କରିବାକୁ ଲାଗିଲା ।

କିଂକର୍ତ୍ତବ୍ୟବିମୁଢ଼ କରୁଣାକର ଲକ୍ଷ୍ୟ କରୁଥିଲେ ଗୋପାଳକୁ, ସୁରମାକୁ ଏବଂ ମହାକାଳକୁ । ଭୟରେ ଚିତ୍କାର କରି ଦୌଡି ପଳାଉଥିବା ଅସହାୟ ବାଳକ ଗୋପାଳର ହାଫ୍ ପ୍ୟାଣ୍ଟଟି ଭିଜିଯାଇ ପାଣିଧାର ଛୁଟିଥାଏ ତା'ର ଦୁଇ ଜଙ୍ଘ ସନ୍ଧିରୁ । ସୁରମାଙ୍କର ତାତ୍ସଲ୍ୟଭରା ହସର ଲହରି ପ୍ରତିଧ୍ୱନିତ ହୋଇ ଫେରି ଆସୁଥାଏ ମନ୍ଦିର କାନ୍ଥରୁ । ଅଗ୍ନିସ୍ଫୁଲିଙ୍ଗ ପରି ପଡୁଥାଏ ପ୍ରଚଣ୍ଡ କ୍ରୋଧରେ ଅତିଷ୍ଠ ହେଇ ଉଠୁଥିବା ମର୍ମାହତ ତାନ୍ତ୍ରିକ ମହାକାଳ ଦାସର ବିସ୍ତାରିତ ଚକ୍ଷୁ ଯୁଗଳରୁ ।



# କଂସେଇ

ନଈ କୂଳରେ ପହଞ୍ଚି ହାତ ଘଣ୍ଟାକୁ ଚାହିଁଲା ରହିମ୍ ଖାଁ । ଦିନ ଆଠଟା ବାଜିଲାଣି । ବେଦମ୍ ଲଗୁଥିଲେ ମଧ୍ୟ ଦମ୍ ମାରିବାକୁ ଫୁର୍‌ସତ୍ ନାହିଁ । ସେପଟେ ବନ୍ଧା ଗ୍ରାହକ ମାନେ ଦୋକାନ ସାମ୍ନାରେ ଭିଡ ଜମେଇ ସାରିବେଣି, ଏପଟେ ଆଗଇଯିବା ରାସ୍ତାରେ ପ୍ରତିବନ୍ଧକ ହୋଇ ଶୋଇ ରହିଛି ଏ ନଈ । ନଈଟା ପ୍ରଶସ୍ତ ହେଲେ ବି ମାତ୍ର ଆଣ୍ଠୁଆଣି ପାଣି । ଆଗପଛ ଚିନ୍ତା ନକରି ପିନ୍ଧା ଲୁଙ୍ଗୀଟାକୁ ଓଲଟାଇ ଅଣ୍ଟାରେ ଖୋସାଖୋସି କଲା ଏବଂ ବୋଝବୁହା ସାଇକେଲ୍‌ଟାକୁ କାନ୍ଧରେ ରଖି ପାଣିରେ ପଶିବାକୁ ଉଦ୍ୟତ ହେଲା ଦୁର୍ଦ୍ଦାନ୍ତ ପଠାଣ ରହିମ୍ ଖାଁ ।

ରହିମ ଖାଁ ପୁରୁଣା ମାଂସ ବେପାରୀ । ସହର ତଳି ଅଞ୍ଚଳର ରାସ୍ତା କଡ ତାଟମରା ଦୋକାନରେ ତା'ର ଏକଚାଟିଆ ମାଂସ ବେପାର । କେଉଁ ଖରିଦଦାରକୁ କେମିତି ସନ୍ତୁଷ୍ଟ କରି ହେବ, ସେ ସବୁ ଆଦବ୍ କାଏଦା ତାକୁ ବେଶ ଜଣା । ପ୍ରତିଦିନ ପ୍ରାୟ ଦୁଇତିନୋଟି ଖାସିର ମାଂସ ବିକ୍ରୀ କରିବାକୁ ତାକୁ ଖୁବ୍ ଗୋଟାଏ ଅସୁବିଧା ହୁଏନାହିଁ । ଦୋକାନରେ ସାହାଯ୍ୟ କରିବାକୁ ଚଉଦ ବର୍ଷର ଟୋକା ଅବଦୁଲ୍ ତା' କାମ ପାଇଁ ଯଥେଷ୍ଟ । ମୂଳ ଜମା ଏବଂ ସାରା ଦିନର ଚା', ପାନ, ସିଗାରେଟ ଇତ୍ୟାଦି ଖର୍ଚ୍ଚ ପରେ ଯାହାକିଛି ଲାଭ ମିଳିଯାଏ ସେଥିରୁ ଅଧା ନିଜର ଏକମାତ୍ର ସ୍ତ୍ରୀ ଅମୀନା ବିବି ହାତରେ ଧରାଇ ଦେଇସାରିବା ପରେ ଅନ୍ୟ ଅଧାକୁ ନେଇ ସଂଧ୍ୟାରେ ବିଦେଶୀ ମଦ ଦୋକାନରେ ପହଞ୍ଚିଯାଏ । ରହିମ ଖାଁ ଗରିବ ହେଲେ ମଧ୍ୟ ମିଜାଜ୍‌ଟା ବେଶ ବଡ । ଦେଶୀମାଲ ତା' ପସନ୍ଦକୁ ଆସେନା । ରାତ୍ରୀ ଭୋଜନ ପରେ ବୋତଲଟାକୁ ଢକ୍ ଢକ୍ କରି ପିଇଦେଇ ଆରାମରେ ଶୋଇଯାଏ । ପାହାନ୍ତାରୁ ଉଠିଲା ବେଳକୁ ମାଲ୍ ନିଶା ପୁରାପୁରି ଛାଡି ଯାଇଥାଏ, ମିଜାଜ୍‌ବି ଖୁସି ଖୁସି ଥାଏ । ନିଜର ଇଂଲିସ ମଡେଲ ସାଇକେଲର କ୍ୟାରିଅରରେ ଝୁଡିଟାକୁ ବାନ୍ଧି ଦେଇ ପୁଣି ବାହାରିପଡେ ଖାସିକିଣା ଅଭିଯାନରେ । ଯାହା ଯେତେବେଳେ ମିଳିଯାଏ ଝୁଡିରେ ବାନ୍ଧିଦେଇ ଦୋକାନକୁ ଫେରିଆସିବାକୁ ପଡେ ଆଠଟା ପୂର୍ବରୁ । ସେତେବେଳକୁ ଅବଦୁଲ ଦୋକାନ ସଫାସୁତୁରା କରି ବଳକା ଛେଳିମାନଙ୍କୁ ଦୋକାନ ସାମ୍ନାରେ ବାନ୍ଧିଦେଇ ସେମାନଙ୍କ ସହିତ ଖେଳ କୌତୁକରେ ମାତିଯାଇ ଥାଏ । ଦୂରଦୂରାନ୍ତରୁ ଗ୍ରାହକ ମାନେ ମଧ୍ୟ କ୍ରମେକ୍ରମେ ଭିଡର ଆସର ଜମେଇ ଦିଅନ୍ତି ଭଲ ମାଂସ କିଛି ପାଇବା ଉଦ୍ଦେଶ୍ୟରେ । ଦୋକାନରେ ପହଞ୍ଚିବାପରେ କ୍ୟାପ୍‌ଷ୍ଟେନ୍ ସିଗାରେଟ ଖଣ୍ଡେ ନିଆଁ ଧରାଇ ରହିମ୍ ଖାଁ ବେପାରରେ ମନୋନିବେଶ କରେ ।

ନଈ କୂଳରୁ ତା'ର ଗନ୍ତବ୍ୟସ୍ଥଳ ଆହୁରି ପ୍ରାୟ ଦୁଇ କିଲୋମିଟର ଦୂର । ମନ ତା'ର ଚଞ୍ଚଳ ହୋଇଉଠିଲା । ପାଣି ଭିତରେ ଗୋଡ ଦେଇଛି କି ନାହିଁ ସାଇକେଲ କ୍ୟାରିଅରରେ ଝୁଡି ଭିତରେ ବନ୍ଧା ହୋଇଥିବା ଏକମାତ୍ର କଅଁଳିଆ ଖାସିଟା "ମେଁ" "ମେଁ" କରି ଚିତ୍କାର କରି ଉଠିଲା । ବୋଧହୁଏ ନଈର ପ୍ରଶସ୍ତ ପାଣିସ୍ତର ଦେଖି ଖାସିଟା ଖୁବ ଡରି ଯାଇଥିଲା ।

"ଚୁପକର ସାଲା, ଇତ୍‌ନା ପାନିକୋ ଡର୍‌ତା ହୈ ? ଥୋଡି ଦେର୍ କେ ବାଦ୍ ଯବ୍ ହାଣା ଖାଓଗେ ନା, ତବ୍ ମେଁ ଦେଖୁଙ୍ଗା ତୁ କିତ୍‌ନା ମେଁ ମେଁ କରୋଗେ ?" ରହିମ ଖାସିକୁ କଡା ସ୍ୱରରେ ତାଗିଦ୍ କରିଦେଲା ।

ଖାସିଟାର ମେଁ, ମେଁ ରଡି ଠକ୍ କରି ବନ୍ଦ ହୋଇଗଲା ରହିମ୍ ଖାଁର କର୍କଷ କଣ୍ଠ ସ୍ୱରରେ । ନଈର ଅପର କୂଳରେ ପହଞ୍ଚି ରହିମ ସାଇକେଲ ଚଳାଇବା ଉଦ୍ଦେଶ୍ୟରେ ପେଡାଲ୍ ଉପରେ ପାଦ ରଖିଲା ।

" ରହିମ୍ ଚାଚା, ତୁ' କ'ଣ ସତରେ ମତେ ହାଣି ଦେବୁ?" ରହିମ୍-ଆଶ୍ଚର୍ଯ୍ୟରେ ପଛକୁ ଫେରି ଚାହିଁଲା । ଖାସିଟା ଝୁଡି ଭିତରୁ ମୁହଁ ଟେକି ତା'ରି ଆଡକୁ କରୁଣ ଦୃଷ୍ଟିରେ ଚାହିଁ ରହିଛି । ଦୁଇ ଆଖିକୋଣରୁ ତା'ର ଦୁଇଧାର ଲୁହ ମଧ୍ୟ ବୋହି ପଡିଛି । ରହିମ୍‌ର ପଥର ଭଳି କଠୋର ମନଟା କାହିଁକି କେଜାଣି ହଠାତ୍ ନରମି ଆସିଲା । ପରମୁହୂର୍ତ୍ତରେ ଗୋଟାଏ ଦୀର୍ଘଶ୍ୱାସ ଭିତରେ ମନକୁ ପୁଣି ଟାଣ କରି ଫିକା ହସଟାଏ ହସି ଦେଲା ଏବଂ ଆଗକୁ ମୁହଁ ଫେରାଇ ନେଇ ସାଇକେଲ ଚଳାଇଲା ।

" ହାଣିବି ନାହିଁ କ'ଣ ସାଲାକୁ ପୂଜା କରିବି ? ତତେ କ'ଣ ମାଲୁମ୍ ନାହିଁ ତୋ ମାଲିକ ମୋଠାରୁ ହାତେ ହାତେ ତିନିଶ ପଚାଶ ଟଙ୍କା ଗଣି ନେଇ ।" ରହିମ୍ ଖାଁ କଣ୍ଠରେ ଦୃଢତା ଆସିଲା ।

" ମତେ ବିକ୍ରୀ ନ କରିବାକୁ ମୋ ମାଲିକର ଉପାୟ ନଥିଲା ରହିମ୍ ଚାଚା । ତୁମେ ହୁଏତ ଜାଣିନାହିଁ ମୋ ମାଲିକର ଦୁରାବସ୍ଥାର କାହାଣୀ । ତାଙ୍କ ବଡଝିଅ ମୀନାଦିଦିର ହଠାତ୍ ବାହାଘର ଠିକ୍ ହୋଇଗଲା । ସେଥିପାଇଁ ତିନି ପୁରୁଷର ଚାଷଜମି ସହିତ ବାଡି ଭିତରର ତିରିଶ ବର୍ଷ ତଳର ପୁରୁଣା ଆମ୍ବଗଛଟା ବିକ୍ରି ହେଲା । ଏକମାତ୍ର ଦୁହାଁଳିଆ ଗାଈଟା ମଧ୍ୟ ବାଦ ପଡିଲାନି ଏବଂ ଶେଷରେ ପଡିଲା ମୋ ପାଳି । ମତେ ନ ବିକିବା ପାଇଁ ମୀନା ଦିଦି ବହୁତ ଜିଦ୍ଦି କଲା, ରୁଷିଲା, କାନ୍ଦିଲା କିନ୍ତୁ କିଛି ଫଳ ହେଲାନି । ମୀନା ଦିଦି ମତେ ବହୁତ ଗେହ୍ଲା କରିଥିଲା । ସେ'ତ ମତେ ଏତେ ଭଲ ପାଉଥିଲା କିନ୍ତୁ ତମେ ସେଇ ମଣିଷ ହୋଇ ଏତେଟା ନିର୍ଦ୍ଦୟ କାହିଁକି ରହିମ ଚାଚା ?"

ନିଷ୍ପାପ ଖାସିଟାର ନିରୀହ ପ୍ରଶ୍ନରେ ରହିମ୍ ଖାଁର କାନ ଦି'ଟା ଘୋ, ଘୋ କରି ଉଠିଲା । ଗମ୍ଭୀର "ହୁଁ" ଟାଏ ମାରି ସେଭଳି ଗୋଟାଏ ସମ୍ବେଦନଶୀଳ ପ୍ରଶ୍ନଟାକୁ ହଜମ୍ କରିବାକୁ ଚେଷ୍ଟା କରୁଥିଲା ରହିମ୍ ଖାଁ ।

" ମତେ ନ ହାଣି ଛାଡିଦିଅନା ରହିମ୍ ଚାଚା । ମୁଁ ତ ତୁମର କିଛି କ୍ଷତି କରିନି । ନିର୍ଦ୍ଦୋଷ ପ୍ରାଣୀକୁ ହତ୍ୟା କରିବା କ'ଣ ତୁମ ଧର୍ମର ନିୟମ ?"

" ତୁ ଶାଲା ବହୁତ ବକ୍ ବକ୍ କରୁଛୁ । ଖୁବ୍ ଚାଲାଖ ଅଛୁ ଦେଖୁଛି । ହେଲେ ମୋ ପାଖରେ ସେ ଚାଲାକି ଚଳିବ ନାହିଁ । ଭାବୁଛୁ ଏମିତି ଗୁଡାଏ ଗପୋଗପିକରି କହିଁଳିଆ କଥା କହି ମତେ ଭୁଲେଇ ଦବୁ ?"

" ଆଚ୍ଛା ରହିମ୍ ଚାଚା, ତୁମେତ ମୋରି ଭଳି ଆହୁରି ଅନେକ ଛେଳି ହାଣୁଥିବ ? ଏତେ ଗୁଡାଏ ନିରୀହ ଜୀବ ହତ୍ୟା କରୁଛ, ତମ ମନକୁ କେବେ କ'ଣ ପାପ ଛୁଉଁ ନାହିଁ ?"

" ତୁ-ଶାଳା ସକାଳୁ ସକାଳୁ ମୋ ମୁଣ୍ଡଟା ବିଗାଡି ସାରିଲୁଣି । ତତେ ଆଜି ପହିଲା ନମ୍ବରରେ କୁତଲ କରିବାକୁ ହବ ।"

ସେତେବେଳକୁ ରହିମ୍‌ର ସାଇକେଲ ତା' ମାଂସ ଦୋକାନ ସାମ୍ନାରେ ପହଞ୍ଚି ସାରିଥିଲା । ରହିମ୍ ଦୀର୍ଘଶ୍ୱାସଟାଏ ଟାଣି ସାଇକେଲରେ ବ୍ରେକ୍ କସିଲା । ଅଣ୍ଟାରେ ଖୋସିଥିବା କ୍ୟାପ୍‌ଷ୍ଟାନ ସିଗାରେଟ୍ ପ୍ୟାକେଟ୍ ଓ ଦିଆସିଲି ବାହାରକରି ଗୋଟାଏ ସିଗାରେଟ୍‌ରେ ନିଆଁ ଧରାଇଲା । ଖାସିଟି ଝୁଡି ଭିତରୁ ମୁଣ୍ଡଟେକି ଚାରିଆଡକୁ ନଜର ବୁଲାଇ ଆଣିଲା । ଦୋକନ ସାମ୍ନାରେ ବନ୍ଧା ହୋଇଥିବା ଛେଳିଙ୍କ ସଂଖ୍ୟାଠାରୁ ମାଂସ ଲୋଭୀମାନଙ୍କ ସଂଖ୍ୟା ବହୁ ଗୁଣରେ ଅଧିକ ଥିଲା । କେଜାଣି କାହିଁକି ଖାସିଟା ଫିକ୍ କରି ହସି ପକାଇଲା ।

"ଧନ୍ୟ, ଧନ୍ୟରେ ଶ୍ରେଷ୍ଠ ପ୍ରାଣୀ । ଧନ୍ୟ କହିବା ସେ ସ୍ରଷ୍ଟାକୁ ଯେ ଏମାନଙ୍କ ଠାରେ ଅନେକ କିଛି ଦୁର୍ବଳତା ଭରିଦେଇ ସୁଦ୍ଧା ଏମାନଙ୍କୁ ଶ୍ରେଷ୍ଠ ପ୍ରାଣୀର ମର୍ଯ୍ୟାଦା ଦେଇ ପାରିଛି । ବିକଳାଙ୍ଗ ବ୍ୟକ୍ତିତ୍ୱ ଏବଂ ପ୍ରଚଣ୍ଡ ହୀନମନ୍ୟତା ସତ୍ତ୍ୱେ ଏମାନେ ସମଗ୍ର ପ୍ରାଣୀସମାଜ ସାମ୍ନାରେ ମୁଣ୍ଡ ଟେକି ଦମ୍ଭ ପ୍ରଦର୍ଶନ କରି ପାରୁଛନ୍ତି ? ସତରେ ନ ହସି ରହିହେଉନାହିଁ ।" ଖାସିଟି ନିଜର ବେକ ଓ ମୁଣ୍ଡ ଅଧିକ ଉପରକୁ ଟେକିବାକୁ ଚେଷ୍ଟା କରୁଥିଲା ।

" ଏ ଖାସିଟା ଖୁବ୍ ବଢିଆ ହେଇଛି ରହିମ୍ ଭାଇ ।" ଅବଦୁଲ ତା' ପାଟିରେ ପୁଳାଏ ଘାସ ଖୁଆଇ ଦେଇ ତା' ପିଠି ଥାପୁଡେଇ ଦେଲା ।

"ଏ ଶାଳା ବହୁତ ବଦମାସ ଅଛି । ତାକୁ ପହିଲା ନମ୍ବରରେ ଲଗାଓ ।" ସିଗାରେଟ୍ ପିଇ ତା'ରି ଆଡକୁ ଧୁଆଁ କୁଣ୍ଡଳୀ ଛାଡୁଥିଲା ରହିମ୍ । ସଙ୍ଗେ ସଙ୍ଗେ ଖାସିଟିର କାନ ଦୁଇଟାକୁ ଧରି ଘୋସାରି ଘୋସାରି ଟାଣିନେଲା ଅବଦୁଲ ।

" କ୍ୟା ବେଟା, ଅବ୍ ଆଏଗା ମଜା ।" ଚକ୍ ଚକ୍ ଛୁରିଟାକୁ ଘଷୁ ଘଷୁ ଥଟ୍ଟାଳିଆ ସ୍ୱରରେ କହିଚାଲିଥିଲା ରହିମ୍ ଏବଂ ତାରି ଆଡକୁ ତୀକ୍ଷଣ ଦୃଷ୍ଟିରେ ଚାହିଁ ରହିଥିଲା । ଖାସିଟା ନିର୍ବିକାର ଭାବରେ ଛଳଛଳ ଆଖିରେ ରହିମ୍ ଖାଁକୁ ଚାହିଁ ଛିଡାହୋଇ ରହିଥାଏ । କିଛି ସମୟ ଚାହିଁବା ପରେ ରହିମ୍ ଖାଁର ଆଖି ଦୁଇଟା କ୍ରମଶଃ ନିମ୍ନଗାମୀ ହେଲା ତା' ଅଜାଣତରେ ।

" ଅବଦୁଲ, ଏଇଟାକୁ ପଛକୁ ରଖ । ଅନ୍ୟ ଗୋଟଏ ଲଗାଅ ।"

" ମୁଁ ଠିକ୍ ଜାଣିଛି ଚାଚା, ତୁ ଯେତେ ଚେଷ୍ଟା କଲେ ବି ମତେ ହାଣି ପାରିବୁ ନାହିଁ" ଖାସିଟା ଚୁପ୍ ଚୁପ୍ କରି ରହିମକୁ କହିଲା ।

ରହିମ କଛି ଉତ୍ତର ନ ଦେଇ ତା' ବେକକୁ ଧରି ଠେଲି ଦେଇଥିଲା ଦୂରକୁ । ସେତେବେଳକୁ ଅବଦୁଲ ଅନ୍ୟ ଗୋଟିଏ ଛେଳିକୁ ସେଠାରେ ପହଞ୍ଚାଇ ଦେଇ ସାରିଥିଲା । ଖାସିଟା ସ୍ତବଧ୍ ହୋଇ କେବଳ ଦର୍ଶକର ଭୂମିକା ଗ୍ରହଣ କରିଥାଏ । ତା'ରି ସାମ୍ନାରେ ଗୋଟାଏ ପରେ ଗୋଟାଏ ଛେଳି କଟା ହୋଇ ବାଉଁଶ ଖୁଣ୍ଟରେ ଝୁଲିଗଲେ ଠିକ୍ ଯେମିତି ବିଚାର ପରେ ଦୋଷୀମାନଙ୍କୁ ଫାଶି ଖୁଣ୍ଟରେ ଝୁଲେଇ ଦିଆଯାଏ । ଦୁଃଖ ଏବଂ

ଅବଶୋଷରେ ତା'ର ନିରୀହ ଆଖି ଦୁଇଟା ବନ୍ଦ ହୋଇ ଯାଉଥାଏ, କିନ୍ତୁ ସେ ବୁଝିବାକୁ ଚେଷ୍ଟାକରି ବୁଝିପାରୁ ନଥାଏ, ଏ ନିର୍ବୋଧ ନିଷ୍ପାପ ଛେଳିମାନଙ୍କର ଅପରାଧ ତ'ଣ ଥିଲା ? କେଉଁ ନ୍ୟାୟ ବିଚାରରେ ଏମାନଙ୍କୁ ପ୍ରାଣ ଦଣ୍ଡରେ ଦଣ୍ଡିତ କରାଗଲା ?

କ୍ରମେ ନିଜ ନିଜର ଆବଶ୍ୟକତା ମୁତାବକ ମାଂସ ପୁଡିଆମାନ ଧରି ଗ୍ରାହକମାନେ ସେ ସ୍ଥାନ ପରିତ୍ୟାଗ କରିବାକୁ ଲାଗିଲେ । କେବଳ ସେଠାରେ ରହିଗଲେ ରହିମ, ଅବଦୁଲ ଏବଂ ସ୍ତବ୍ଧ ହୋଇଯାଇଥିବା ସେ ଖାସିଟା । ଶେଷ ସିଗାରେଟ୍‌ରେ ନିଆଁ ଧରାଇ ଖାଲି ପ୍ୟାକେଟ୍‌ଟିକୁ ଦୂରକୁ ଫିଙ୍ଗି ଦେଲା ରହିମ ଖାଁ । ଖାସିଟିକୁ ପୁଣି ଝୁଡିରେ ପୁରାଇ ସାଇକେଲ ପେଡାଲ ମାରିବାକୁ ଆରମ୍ଭ କଲା ଘର ଉଦ୍ଦେଶ୍ୟରେ ।

'' ଏ ସବୁ ତୁ ଭଲ କାମ କରୁନୁ ରହିମ୍ ଚାଚା । ପଛରେ ତୁ ବହୁତ ପସ୍ତେଇବୁ । ଏବେବି ସମୟ ଅଛି, ଏ ଧନ୍ଦା ବନ୍ଦକର ।'' ଖାସିଟା ସତର୍କ କରେଇବାକୁ ଚେଷ୍ଟା କରୁଥିଲା କିନ୍ତୁ ରହିମ୍ କିଛି ଉତ୍ତର ଦେଇ ନଥିଲା କିମ୍ବା ପଛକୁ ଫେରି ଚାହିଁ ନଥିଲା ।

''ମୁଁ ଜାଣେ ତୁ କାହିଁକି ମୋ ପ୍ରଶ୍ନକୁ ଏଡାଇ ଯିବାକୁ ଚାହୁଁଛୁ । ତୁ ଯେତେ ଦମ୍ଭରେ ବଡପାଟିରେ କଥା କହି ମତେ ନିରାଶ କରିବାକୁ ଚେଷ୍ଟାକଲେ ମଧ୍ୟ ତୋ ଭିତରେ ଦୁର୍ବଳତା ରହିଛି, ଏକଥା ତତେ ସ୍ୱୀକାର କରିବାକୁ ହେବ । ''

'' ତୁ ଶାଲା ବକ୍ ବକ୍ ବନ୍ଦ କରିବୁ , ନାଁ ଦି'ଟା ଥାପ୍‌ପଡ ଖାଇବୁ ?'' ରହିମ୍ ଖାଁ ସଠିକ୍ ଉତ୍ତର ଦେବାକୁ ଯେମିତି ହଡ ବଡେଇ ଯାଉଥିଲା ।

'' ଯିଏ ହାଣ ଖାଇବାକୁ ପ୍ରସ୍ତୁତ ଅଛି, ତାକୁ ତୁ ଦି'ଟା ଛାଡି ଚାରିଟା ଚାପୁଡା ମାରିଲେ ତା'ର କିଛି ଅଧିକ କ୍ଷତି ହେବନାହିଁ । କିନ୍ତୁ ରହିମ୍ ଚାଚା, ତୁ କ'ଣ ଛାତିରେ ହାତ ରଖି କହିପାରିବୁ ଯେ ଜୀବହତ୍ୟା କରିବାକୁ ତତେ ଖୁସି ଲାଗେ ? ସେଥିପାଇଁ ତୁ କ'ଣ କେବେ ବି ଅନୁତପ୍ତ ହେଉନୁ ? ଏ ନିରୀହ ଛେଳି ସମାଜ ତୋର କି ଅପରାଧ କରିଛି ଚାଚା, କ'ଣ ପାଇଁ ତୋ ଇଛା ବିରୁଦ୍ଧରେ ତୁ ଏଭଳି ନିର୍ଦ୍ଦୟ, ଘୃଣ୍ୟ କାମ କରି ଚାଲିଛୁ ? କେବେ ଥରେ ହୃଦୟଙ୍ଗମ କରିବାକୁ ଚେଷ୍ଟା କରିଛୁ ମୃତ୍ୟୁ ସମୟରେ ଛେଳିଟାର ମେଁ ମେଁ ଶବ୍ଦ ଭିତରେ ତା'ର କରୁଣ ଆର୍ତ୍ତନାଦକୁ ?''

ରହିମ ପୁଣିଥରେ ପଛକୁ ଫେରିଚାହିଁଲା । ଖାସିଟିର ଦୁଇ ଆଖିକୋଣରୁ ଧାର ଧାର ଅଶ୍ରୁର ବନ୍ୟା । ତା'ର ନିଜ ଆଖି ଛଳ ଛଳ ହୋଇ ଖାସିର ମୁହଁଟା ଝାପସା ଦିଶିବା ପୂର୍ବରୁ ସେ ମୁହଁ ଫେରେଇ ନେଇ ଥିଲା ସାମ୍ନାକୁ । ଅଧାଜଳା ସିଗାରେଟକୁ ଦୂରକୁ ଫିଙ୍ଗିଦେଇ ଚେଷ୍ଟାକଲା ଅଧିକ ବେଗରେ ସାଇକେଲ ଚଳାଇବାକୁ ।

'' ମୋ ପ୍ରଶ୍ନର ଉତ୍ତର ତତେ ଦେବାକୁ ହେବ ଚାଚା । ତୋର ଅନ୍ତଃଚକ୍ଷୁ ନ ଖୋଲିବା ପର୍ଯ୍ୟନ୍ତ ମୁଁ ତତେ ଅତିଷ୍ଠ କରି ଚାଲିଥିବି । ଏ ଛେଳି ଗୁଡାକ ତୋର କିମ୍ବା ଅନ୍ୟ କାହାର ଶତ୍ରୁ ନୁହଁନ୍ତି କିମ୍ବା କେବେବି କାହାର କ୍ଷତି କରିବାକୁ ଚେଷ୍ଟା କରି ନାହାନ୍ତି । କ'ଣ ପାଇଁ ସାମାନ୍ୟ ଟିକିଏ ମାଂସର ଲୋଭକୁ ସମ୍ବରଣ କରି ନ ପାରି ଏ ପୃଥିବୀପୃଷ୍ଠରୁ ଗୋଟାଏ ବଂଶର ବିଲୋପ ସାଧନ ପାଇଁ ଏ ଅପଚେଷ୍ଟା ? ଛେଳିମାନଙ୍କର କ'ଣ ବଞ୍ଚିରହିବାର ନୈତିକ ଅଧିକାର

ନାହିଁ ? ସେମାନଙ୍କର ପ୍ରତିବାଦ କିମ୍ବା ପ୍ରତିରୋଧ ଶକ୍ତି ନାହିଁ ବୋଲି କ'ଣ ଦୁର୍ବଳ ଉପରେ ସବଳର ଅତ୍ୟାଚାର ବଢ଼ି ବଢ଼ି ଚାଲିଥିବ ?'' ଖାସିଟିର କଣ୍ଠରେ ପ୍ରତିବାଦର ସ୍ୱର ବେଶ୍ ତୀବ୍ର ଥିଲା ।

''ବାସ୍ ବେଟା, ବାସ୍ । ବହୁତ ଗପି ଗଲୁଣି । ଏଥର ମୁହଁ ବନ୍ଦକର । ତତେ ପ୍ରଥମ ନମ୍ବରରେ କତଲ୍ କରିବାକୁ ହେବ । ନ ହେଲେ ତୁ ମୋର ଧନ୍ଦା ବନ୍ଦ କରିଦେବୁ ଦେଖୁଛି।''

'' ତୁ ମୋତେ କେବେ ବି ହାଣି ପାରିବୁନି ଚାଚା । ତୋର କଲିଜା କେତେ ଟାଣ, ମତେ ଠିକ୍ ମାଲୁମ୍ ଅଛି । ମତେ ହାଣିଦେଲେ ମଧ୍ୟ ତୁ ଶାନ୍ତିରେ ରହି ପାରିବୁନି କିମ୍ବା ମୋ ପ୍ରତିବାଦର ସ୍ୱରକୁ ବନ୍ଦ କରି ପାରିବୁନି । ନିଜକୁ ଚିହ୍ନିବାକୁ ଚେଷ୍ଟା କର ଚାଚା, ଏ ମିଛମାୟା ପଛରେ ଦୌଡ଼ି ଦୌଡ଼ି ଆଉ କେତେଦିନ ଛଟପଟ ହେବୁ ? ଏଥର ଲାଭକ୍ଷତିର ହିସାବ କଷିବାକୁ ଚେଷ୍ଟାକର ।''

ରହିମ୍ କିଛି ଉତ୍ତର ଦେବା ପୂର୍ବରୁ ସାଇକେଲର ବ୍ରେକ୍ ଚିପି ହୋଇ ସାରିଥିଲା ଠିକ୍ ତା' ଘର ସାମ୍ନାରେ । ଘର ଭିତରେ ବସିଯାଇ ନିଜର ବିଗିଡ଼ା ମୁଣ୍ଡଟାକୁ ସଜାଡ଼ି ନେବାପାଇଁ ପୁଣି ଗୋଟାଏ କ୍ୟାପ୍‌ଷ୍ଟାନ୍ ସିଗାରେଟ୍‌ରେ ନିଆଁ ଧରାଇଲା ।

ପରଦିନ ସକାଳୁ ଦୋକାନ ସାମ୍ନାରେ ଗ୍ରାହକମାନଙ୍କ ଆଗମନକୁ ଅପେକ୍ଷା କରିଥିଲେ ଅବ୍‌ଦୁଲ ଏବଂ ସେଇ ଖାସିଟା । କ୍ରମଶଃ ଗ୍ରାହକମାନଙ୍କ ଭିଡ ଜମିବାକୁ ଲାଗିଲା । କିଛି ସମୟପରେ ଦୁଇଟା ଖାସି ଝୁଡ଼ିରେ ବାନ୍ଧି ଦୋକାନ ସାମ୍ନାରେ ପହଞ୍ଚିଲା ରହିମ ଖାଁ । ସେଦିନ ପ୍ରଥମ ପାଳିରେ ନୂଆ ଆସିଥିବା ଖାସି ଦୁଇଟା କଟା ହୋଇଗଲେ । ସମସ୍ତ ଗ୍ରାହକ ବିଦାୟ ନେଇ ଚାଲିଯିବା ପରେ ଏ ଖାସିଟାର ପାଳି ପଡ଼ିବାକୁ ବୋଧହୁଏ ଆଉ ସୁଯୋଗ ନଥିଲା । ତାକୁ ପୁଣି ଝୁଡ଼ିରେ ବାନ୍ଧି ରହିମ୍ ଘରମୁହାଁ ହେଲା ।

'' ତୁ ଆଜି ମଧ୍ୟ ମତେ ହାଣି ପାରିଲୁନି ଚାଚା ? କେତେଦିନ ଏମିତି ଭାବରେ ମତେ ଝୁଡ଼ିରେ ବୋହିବୋହି ଚାଲିଥିବୁ ? ମୁଁ ଜାଣେ ତୁ ରାତିରେ ଶାନ୍ତିରେ ଶୋଇପାରୁନୁ । କିନ୍ତୁ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ତତେ ପ୍ରତି ମୁହୂର୍ତ୍ତରେ ସତର୍କ କରାଉଥିବି । ଏ ସଂଘର୍ଷରେ ତୁ ହାରିଯିବୁ ଚାଚା, ତୁ ନିଶ୍ଚୟ ହାରିଯିବୁ । ଏବେ ମଧ୍ୟ ସମୟ ଅଛି । ଏ ଧନ୍ଦା ବନ୍ଦକର । ଆଚ୍ଛା, ତୁ ଥରେ ଚିନ୍ତା କରିଛୁ ଚାଚା, ତୋର କେହି ଅତି ନିଜର ଲୋକକୁ ତୋରି ଆଖି ସାମ୍ନାରେ ଯଦି ଅନ୍ୟ ଜଣେ ନିର୍ଦ୍ଦୟ ଭାବରେ ହାଣି ପକାଏ, ଠିକ୍ ତୁ ଯେମିତି ମୋରି ସାମ୍ନାରେ ହାଣି ଚାଲିଛୁ ଏ ଛେଳି ବଂଶକୁ, ତୁ ସହ୍ୟ କରି ପାରିବୁତ ? ''

ରହିମ୍ ପଛକୁ ମୁହଁ ବୁଲାଇ ଦାନ୍ତ କଡମଡ କରି ଖାସିଟି ଆଡ଼କୁ ବଡ଼ବଡ଼ ଆଖିରେ ଚାହିଁଲା ସିନା କିନ୍ତୁ କିଛି ଉତ୍ତର ଦେଇ ପାରିଲାନି ।

'' ତୁ ବରଂ ମତେ ଶୀଘ୍ର ହାଣିଦେ ରହିମ ଚାଚା । ମୁଁ ତୋର ଏ କଷ୍ଟ, ଏ ଅନ୍ତଃଦହନ ସହ୍ୟ କରିପାରୁନି । ତୁ କେତେଦିନ ପର୍ଯ୍ୟନ୍ତ ନିଜର ଅସଲ ସ୍ୱରୂପକୁ ଲୁଚାଇ ରଖିପାରିବୁ ?'' ଖାସିଟି ବିନୀତ ଭାବରେ କହି ଚାଲିଥିଲା । ରହିମ୍ ମୁହଁ ରେ କୌଣସି ଭାଷାର ପରିପ୍ରକାଶ ନଥିଲା ।

ତହିଁ ପରଦିନ ସକାଳେ ମଧ୍ୟ ପୂର୍ବଭଳି ରହିମ ଖାଁକୁ ଦୋକାନ ସାମ୍ନାରେ ଅପେକ୍ଷା କରିଥାନ୍ତି ଅବଦୁଲ ଓ ସେଇ ଖାସିଟି । କ୍ରମେ ଗ୍ରାହକମାନଙ୍କ ଭିଡ ଲାଗିବା ସଂଗେ ସଂଗେ ରହିମ୍ ଖାଁର ମଧ୍ୟ ଆବିର୍ଭାବ ହେଲା ତା'ର ଚିରାଚରିତ ସମୟ ଅନୁସାରେ । ସେଦିନ କିନ୍ତୁ ଝୁଡିରେ ଥିଲା ମାତ୍ର ଗୋଟାଏ ଖାସି । ଠିକ୍ ସମୟରେ ସେ ଖାସିଟି ବଳି ପଡିଲା ମାଂସଲୋଭୀମାନଙ୍କ ଉଦ୍ଦେଶ୍ୟରେ । ଅବଦୁଲ କିନ୍ତୁ ସେଦିନ ଲକ୍ଷ୍ୟକରି ଆଶ୍ଚର୍ଯ୍ୟ ହୋଇଥିଲା ଯେ ଯେଉଁ ଦୁର୍ଦ୍ଦାନ୍ତ ରହିମ ଖାଁ ନିର୍ଦ୍ଦୟ ଭାବରେ ହଜାର ହଜାର ସଂଖ୍ୟାରେ ଖାସି କାଟି ସେମାନଙ୍କ କରୁଣ ନିଶ୍ୱାସକୁ ସିଗାରେଟ ଧୂଆଁ ଭିତରେ ହଜମ୍ କରି ଦେଉଥିଲା; ସେହି ରହିମ୍ ଖାଁର ଲୁହା ଭଳି ହାତ ଦିଟା ଆଜି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କମ୍ପୁଛି କାହିଁକି ? କିନ୍ତୁ ତା'ର ସନ୍ଦେହମୋଚନ ପାଇଁ ରହିମକୁ ପ୍ରଶ୍ନ ପଚାରିବା ତା' ସୀମାର ବାହାର ଥିଲା । ଗ୍ରାହକମାନେ ଅପେକ୍ଷାରତ । ଏଥର ଗତ ତିନି ଦିନ ଧରି ଅପେକ୍ଷା କରିଥିବା ଖାସିର ପାଳି । ରହିମ୍ ଖାଁ ସିଧା ହୋଇ ସାମ୍ନା କଲା ଖାସିଟିକୁ । ଖାସିଟି ନିର୍ବିକାର ଭାବରେ ଚାହିଁ ରହିଥାଏ ରହିମ ଖାଁର ଆଖିକୁ । ତା'ର ଦୁଇ ସଜଳ ଆଖି ସାମ୍ନାରେ ସେ ଦେଖୁଥିଲା ରହିମ ଖାଁ ଭିତରୁ ଉଦୟ ହୋଇ ଆସୁଥିବା ପ୍ରଚଣ୍ଡ ପ୍ରତିଭାବାନ୍ ରାମଚନ୍ଦ୍ରଙ୍କର ପ୍ରଶାନ୍ତ ମୂର୍ତ୍ତି । ରାମ-ରହିମର ଅପୂର୍ବ ସଂଯୋଗ ଦର୍ଶନ କରି ଖାସିଟି କୃତ୍ୟ କୃତ୍ୟ ହୋଇ ଉଠୁଥିଲା । ରହିମ୍ ଖାଁର ଶୁଖି ଆସୁଥିବା ଓଠ ଦୁଇଟି କ୍ରମଶଃ ଥରିବାକୁ ଲାଗିଲା । ତା'ର ରକ୍ତବର୍ଣ୍ଣ ଆଖି ଦୁଇଟି ସଜଳ ହୋଇ ଆସ୍ତେ ବନ୍ଦ ହୋଇଗଲା । ଖାସିଟି ସେତେବେଳକୁ ଆପେ ଆପେ ଯାଇ ରହିମଖାଁର ପାଦ ପାଖରେ ସମର୍ପଣର ପ୍ରଶାନ୍ତ ମନୋଭାବ ନେଇ ଛିଡା ହୋଇ ସାରିଥିଲା । ହଠାତ୍ ରହିମ ଖାଁ ଖାସିଟାକୁ ତା' ନିଜ କୋଡ ଭିତରକୁ ଟାଣିନେଇ ତାକୁ ଖୁବ୍ ଜୋରରେ ଭିଡିଧରି ଭୋଭୋ କରି କାନ୍ଦି ଉଠିଲା, ଠିକ୍ ଯେମିତି ତା'ର ପାଞ୍ଚବର୍ଷର ମଲାପୁଅକୁ କୋଡରେ ଧରି ସେ ଖୁବ୍ ଜୋରରେ କାନ୍ଦିଥିଲା ପ୍ରାୟ ତିନିବର୍ଷ ତଳେ ।

ପରିସ୍ଥିତିର ଗାମ୍ଭୀର୍ଯ୍ୟ ଲକ୍ଷ୍ୟ କରି ଗ୍ରାହକମାନେ ଏ ସବୁର ପ୍ରକୃତ ତଥ୍ୟ ଉଦ୍‌ଘାଟନ କରିବା ପୂର୍ବରୁ ନିଜ ନିଜର ରାସ୍ତା ଧରିବାକୁ ବାଧ୍ୟ ହୋଇଥିଲେ, ଯଦି ବା ଖାସିଟିର ଗୁଲୁଗୁଲିଆ ଚେହେରା ତଳେ ପୂରି ରହିଥିବା ନରମ ମାଂସପେଶୀ ଗୁଡିକ ଉପରେ ସେମାନଙ୍କ ତୀର୍ଯ୍ୟକ ନଜର ଲାଗି ରହିଥିଲା ।

ଗ୍ରାହକମାନେ ସେ ସ୍ଥାନ ଛାଡି ଚାଲିଯିବା ପରେ ରହିମ୍ ଖାଁ ନିଜର ଭାବାବେଗ ସମ୍ବରଣ କରି ମୁଣ୍ଡରେ ବାନ୍ଧିଥିବା ଗାମୁଛାଟିକୁ ଖୋଲିଲା । ସଂପୂର୍ଣ୍ଣ ଭିଜି ଯାଇଥିବା ନିଜର ଦୁଇ ଆଖି ଓ ମୁହଁକୁ ଭଲ କରି ପୋଛି ପରିଷ୍କାର କରିନେଲା । ଅଣ୍ଟାରେ ଖୋସିଥିବା ଦିଆସିଲିଟି ବାହାର କରି ଦମ୍ଭର ସହିତ ନିଆଁ ଜଳାଇ ଫିଙ୍ଗି ଦେଲା ଦୋକାନ ଘରର ବରଡା ଚାଟ ଉପରକୁ । ଶୁଖିଲା ବରଡାର ଚାଳ କାଛ ସହ ସମଗ୍ର ଦୋକାନଟି ହୁ ହୁ ହୋଇ ଜଳିବାକୁ ଲାଗିଲା । ଅବଦୁଲ୍ ମିଆଁ ଦୁଃଖରେ ଭାଙ୍ଗିପଡୁଥିବା ବେଳେ ରହିମ୍ ଖାଁ ଆନନ୍ଦାଶ୍ରୁ ପୋଛୁଥିଲା । ଖାସିଟି ସ୍ତବ୍ଧ ହୋଇ ଲକ୍ଷ୍ୟ କରୁଥିଲା ଲେଲିହାନ ଅଗ୍ନିଶିଖା ଭିତରୁ ରହିମ୍ ଖାଁର ପୂନର୍ଜନ୍ମ ଲାଭ ଏବଂ ଶୁଣିପାରୁଥିଲା ହଜାର ହଜାର ଅତୃପ୍ତ ଛେଳିମାନଙ୍କ ଆତ୍ମାର ତୃପ୍ତିର ଉଲ୍ଲାସ ।



# ପୁନଶ୍ଚ ପଶ୍ଚିମ

ରିକ୍ସା ପହଞ୍ଚିଲା ବସ୍‌ଷ୍ଟାଣ୍ଡରେ। ସେତେବେଳକୁ ଟକାଟୋଲା ବସ୍ ଛାଡିବା ଛାଡିବା ହେଉଥାଏ । କ୍ଲିନରଟିର 'ଭୁବନେଶ୍ୱର', 'ଭୁବନେଶ୍ୱର' ଡାକରେ ବସଷ୍ଟାଣ୍ଡ ମୁଖରୀତ ହେଉଥାଏ । ଏକମୁହାଁ ହୋଇ ବସ୍‌ଭିତରକୁ ଉଠିଗଲି । ସେଦିନ ଭୁବନେଶ୍ୱରରେ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟମାନଙ୍କର ମିଟିଙ୍ଗ୍ ଥାଏ । ଯିବାକୁ ବାଧ । ଏପଟେ ବସଭିତରେ ଗୋଟାଏ ମଧ୍ୟ ସିଟ୍ ଖାଲି ନାହିଁ ବରଂ କିଛି ଲୋକ ଛିଡା ହୋଇଥାନ୍ତି ।

ଏତେ ଭିଡରେ ଭୁବନେଶ୍ୱର ପର୍ଯ୍ୟନ୍ତ ଛିଡା ହୋଇ ଯିବା ଅସମ୍ଭବ । କିନ୍ତୁ ଏ ବସଟିକୁ ଛାଡି ଦେଲେ ଠିକ୍ ସମୟରେ ମିଟିଂରେ ଯୋଗଦେଇ ହେବନି । କ'ଣ କରିବି ଚିନ୍ତା କରିବା ଭିତର ସିଟ୍‌ରେ ବସିଥିବା ଲୋକମାନଙ୍କ ଉପରେ ଟିକିଏ ନଜର ବୁଲେଇ ଆଣିଲି । କାହିଁ ଗୋଟିଏ ହେଲେ ଚିହ୍ନା ମୁହଁ ତ ଦିଶୁନାହିଁ । ଦିଶିଲେ ବା ଆଉ କ'ଣ ଅଧିକ ହୋଇଥାନ୍ତା ଯେ ? ଆମେ ତ' ଆଉ ମାଷ୍ଟର, ଡାକ୍ତର କିମ୍ବା ନେତା ହେଇନୁ ଯେ କାହାର ଆମ ପ୍ରତି ଭକ୍ତି କିମ୍ବା ଭୟ ରହିବ । ଉପକାର ପାଇଥିବା ଲୋକଟି କୃତଜ୍ଞତା ପୂର୍ବକ ସିଟ୍‌ଟିଏ ଛାଡି ଦେବ । ଜେଲ୍ ସୁପରିଟେଣ୍ଡେଣ୍ଟ ଚାକିରୀ କାଳ ମଧ୍ୟରେ ତ ଆମର କେବଳ ଅସାମାଜିକ କଏଦୀ ମାନଙ୍କ ସହିତ ସମ୍ପର୍କ, ଯେଉଁ ମାନଙ୍କ ଅଭିଧାନରେ କୃତଜ୍ଞତା ବୋଲି ଶବ୍ଦଟିଏ ଆଦୌ ନଥାଏ । ଏଭଳି ଚାକିରୀଟିଏ କରିଥିବାରୁ ନିଜପ୍ରତି ଏବଂ ନିଜର ଚାକିରୀ ପ୍ରତି ମନଟା ତିକ୍ତ ହୋଇଉଠିଲା । ଏତେ ଗୁଡାଏ ପାଠ ପଢି ମଧ୍ୟ ମୋର ସମାଜରେ ସ୍ଥିତି କ'ଣ ? ମୁଁ ଚାହିଁଥିଲେ କ'ଣ ଅନ୍ୟ କିଛି ଗୋଟାଏ ହୋଇପାରିନଥାନ୍ତି ? କିଛି ନ ହୋଇ ପାରିଥିଲେ ସୁଦ୍ଧା ନେତାଟିଏ ତ ସହଜରେ ହୋଇପାରିଥାନ୍ତି । ସମାଜରେ ମୋର ଯଥେଷ୍ଟ ଖାତିର ତ ରହି ପାରିଥାନ୍ତା । ଛାଡ, ବାଜେ ଚିନ୍ତା କରି ମନଟାକୁ ଦୁର୍ବଳ କରିବା ଉଚିତ୍ ନୁହେଁ ।

ଶେଷରେ ଠିକ୍ କଲି, ଶରୀରକୁ ଏତେ କଷ୍ଟ ଦେଇ ଛିଡା ହୋଇ ଯିବା ଅପେକ୍ଷା ବରଂ ପର ବସରେ ଯିବା ଉଚିତ୍ । ବସରୁ ଓହ୍ଲାଇବା ଉଦ୍ଦେଶ୍ୟରେ ମୁହଁ ବୁଲେଇଲି ।

"ସାର ନମସ୍କାର । କୁଆଡେ ଯିବେ ?"

ବୁଲିପଡି ପଛକୁ ଚାହିଁଲି । ପାଖ ସିଟରୁ ଲୋକଟିଏ ଛିଡା ହେଉଛି । ମୁହଁଟି ତା'ର ବୋଦୋ ଚିହ୍ନା ଲାଗୁଥାଏ । ବୟସ ତିରିଶ ପଇଁତିରିଶ ହୋଇପାରେ । ସାବନା ବର୍ଣ୍ଣକୁ ଅତିକ୍ରମ କରିଛି ଚେହେରା । ବେଶଭୁଷା କହିଲେ ମଇଳା ଫୁଲ୍‌ପ୍ୟାଣ୍ଟ ସାଙ୍ଗକୁ ରଫୁକରାଯାଇଥିବା ମଇଳା ହାଓ୍ୱାଇ ସାର୍ଟ । କେଉଁଠି ତାକୁ ଦେଖିଲା ଦେଖିଲା ପରି ମନେପକାଇବା ଭିତରେ ଉତ୍ତର ଦେଇ ସାରିଥିଲି, 'ଭୁବନେଶ୍ୱର ଯିବି ।'

"ଆପଣ ଏଇ ସିଟରେ ବସନ୍ତୁ ।" ଲୋକଟି ନିର୍ବିକାର ଭାବରେ କହିଲା ।

ମନେ ମନେ ଭାବୁଥିଲି, ମୁଁ ଏ ଲୋକଟିର ତ କେବେ କୌଣସି ଉପକାର କଲାଭଳି ମନେ ପଡୁନାହିଁ । ତେବେ ମୋତେ ସାହାଯ୍ୟ କରିବାକୁ ଏ ଲୋକଟି ଏତେ ବ୍ୟଗ୍ର କାହିଁକି ? ତା' ଛଡା ଏଭଳି ଗୋଟାଏ ଦୁର୍ବଳ ଲୋକକୁ ଛିଡା କରାଇ ମୁଁ ଆରାମରେ ସିଟ୍‌ରେ ବସି

ଯିବାଟା ମଧ ଅନ୍ୟାୟ ହେବ । କିନ୍ତୁ ଠିକ୍ ସମୟରେ ମିଟିଂରେ ପହଞ୍ଚିବାକୁ ହେଲେ ଏଇ ବସ୍‌ରେ ମୋର ଯିବାଟା ମଧ ନିହାତି ଜରୁରୀ । ବଡ ଦ୍ୱନ୍ଦରେ ପଡିଲି ।

"ନାଇଁ ସାର୍, ଆପଣ ଏଇଠି ବସନ୍ତୁ । ମୁଁ ଆଉ ଏ ବସ୍‌ରେ ଯିବି ନାହିଁ ।" ଲୋକଟି ସ୍ପଷ୍ଟ ଭାବରେ ଉତ୍ତର ଦେଲା ।

ଲୋକଟିର ମୋ ପ୍ରତି ଏତେ ବଡ ତ୍ୟାଗ ପାଇଁ ମୁଁ ଯଥେଷ୍ଟ ଆଶ୍ଚର୍ଯ୍ୟ ହେଉଥିଲି । ବସଟି ଏଥର ଚାଲିବାକୁ ଆରମ୍ଭ କଲା । ଆଉ ଅଧିକ ଚିନ୍ତା ନକରି ସିଟ୍‌ରେ ବସିଗଲି ।

"ଭୁବନେଶ୍ୱର ବସଷ୍ଟାଣ୍ଡରେ ଦେଖା ହେବ ସାର୍ ।" ଲୋକଟି ପୁଣି ଥରେ ନମସ୍କାର କରି ଟିକିଏ ହସି ଦେଇ ବସ୍‌ରୁ ଓହ୍ଲାଇଗଲା । ମୁଁ କୃତ୍ୟ କୃତ୍ୟ ଆଖିରେ ଲୋକଟିର ଯିବା ବାଟକୁ ଚାହିଁରହିଥିଲି । ପାଟିରୁ କାହିଁକି କେଜାଣି ଧନ୍ୟବାଦଟିଏ ମଧ ବାହାରି ନଥିଲା ।

ବସ ମାଡି ଚାଲିଥିଲା ଆଗକୁ । ତା' ସହିତ ତାଳ ଦେଇ ମୋ ଭାବନା ମଧ ଆଗେଇ ଚାଲିଥିଲା । ମନେପକାଇବାକୁ ଆପ୍ରାଣ ଚେଷ୍ଟା କରୁଥିଲି ଅଯାଚିତ ସାହାଯ୍ୟ କରିଥିବା ସେ ଲୋକଟିର ମୋ ସହିତ ପରିଚୟ ସମ୍ପର୍କରେ । ବୟାସାଧିକ ପାଇଁ ସ୍ମରଣ ଶକ୍ତି କମି କମି ଆସୁଥିବାରୁ ଠିକ୍ ଭାବରେ ମନେ ପକାଇ ପାରୁନଥିଲି । ଆଃ, ମନେ ପଡିଗଲା । ଦୁଇ ବର୍ଷତଳେ ଏଇ ଲୋକଟି ଜଣେ କଏଦୀ ଭାବରେ ମୋ ଜେଲରେ ଦୁଇ ମାସ ରହିଥିଲା । ନାଁ ତା'ର ନରେନ୍ଦ୍ର ସାହୁ । ଲୋକଟିର ଶାନ୍ତ, ସରଳ, ଭଦ୍ର ପ୍ରକୃତି ପାଇଁ ତା' ପ୍ରତି ମୋର ଯଥେଷ୍ଟ ଦୟା ଏବଂ ସହାନୁଭୁତି ଆସିଯାଇଥାଏ । ବେଳେବେଳେ ତାକୁ ଅଫିସକୁ ଡକାଇ ତା'ର ଭଲମନ୍ଦ ଏବଂ ଘର କଥା ବୁଝୁଥିଲି । ନରେନ୍ଦ୍ର ପରିବାରର ବଡପୁଅ । ବୟସ ଯଥେଷ୍ଟ ହୋଇ ଯାଇଥିଲେ ମଧ ସେ ଅବିବାହିତ ରହିବାକୁ ବାଧହୋଇଥିଲା । ପିଲା ଦିନରୁ ବାପାଙ୍କୁ ହରେଇଥାଏ । ଗାଁରେ ବୁଢୀ ମା' ଏବଂ ବିବାହ ଯୋଗ୍ୟା ତିନୋଟି ଭଉଣୀ । ଅଭାବ ଅନାଟନ ତାକୁ ଶିକ୍ଷା ଦିକ୍ଷାରୁ ବଞ୍ଚିତ କରିଥାଏ । ପେଟ ପୋଷିବାକୁ ଅନ୍ୟ କୌଣସି ସହଜ ଉପାୟ ନଦେଖି, ପକେଟ୍ ମାର କରି ଗୁଜୁରାଣ ମେଣ୍ଟାଇବାକୁ ଗୋଟାଏ ପନ୍ଥା ରୂପେ ସେ ଧରି ନେଇଥିଲା । ହଠାତ୍ ଦିନେ ସେ ପୋଲିସ୍ ହାତରେ ଧରାପଡିଲା । କେସ୍ ବିଚାରପରେ ତାକୁ ଦୁଇମାସ ଜେଲ ଦଣ୍ଡ । ଜେଲରେ ଥିବା ବେଳେ ତା' ଜୀବନର ଦୁଃଖମୟ ଇତିହାସ ପୃଷ୍ଠା ଗୁଡିକ ଉନ୍ମୋଚନ କରି କେତେଥର ସେ ମୋ ଆଗରେ ଖୁବ୍ କାନ୍ଦିଛି । ତା'ର କେବଳ ଚିନ୍ତା ତା'ର ଭଉଣୀ ମାନଙ୍କର ଭବିଷ୍ୟତ । ସେ ନିଜେ ବରଂ ନର୍କକୁ ଯାଉ, ତା' ଭଉଣୀମାନେ ଉଦ୍ଧାର ପାଆନ୍ତୁ । ବଡ଼ ଅଦ୍‌ଭୁତ ଥିଲା ତା'ର ତ୍ୟାଗ ।

ଚାହୁଁ ଚାହୁଁ ଦୁଇମାସ ପୁରିଗଲା । ନରେନ୍ଦ୍ର ଜେଲରୁ ମୁକ୍ତି ପାଇ ଘରକୁ ଯିବା ପୂର୍ବରୁ ଛଳଛଳ ଆଖିରେ ମୋ' ପାଖକୁ ବିଦାୟ ନେବାକୁ ଆସିଥିଲା ।

"ସାର୍, ମୋତେ ଆଶୀର୍ବାଦ କରନ୍ତୁ । ମୁଁ ଆଉ ଯେମିତି ଏ ନର୍କକୁ ନ ଆସେ ।" ସେତେବେଳେ ଆନନ୍ଦରେ ମୋ ଓଠ ଥରି ଉଠିଥିଲା । ଆଖିକୋଣରେ ଲୁହ ବୁନ୍ଦାଏ ଜକେଇ ଆସିଥିଲା ମୋ ଅଜାଣତରେ ।

ବସ୍ ସେତେବେଳକୁ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ପହଞ୍ଚି ସାରିଥାଏ । ଭାରାକ୍ରାନ୍ତ ମସ୍ତିଷ୍କ ନେଇ ବସରୁ ଓହ୍ଲାଇଲି । ବାଟରେ ବସଟି ବହୁସମୟ ରହି ରହି ଆସିଥିବାରୁ

ସେତେବେଳକୁ ବେଶ୍ ବିଳମ୍ବ ମଧ୍ୟ ହୋଇଯାଇଥାଏ । ଅଫିସ୍ ଯିବା ଉଦ୍ଦେଶ୍ୟରେ ଗୋଟିଏ ରିକ୍ସା ଆଡକୁ ଆଗେଇ ଚାଲିଲି ।

"ସାର୍, ଏଇଠିକି ଟିକିଏ ଆସିବେ ?"

କାହାର ସାଦର ଡାକରେ ଫେରିଚାହିଁଲି ପଛକୁ । ନରେନ୍ଦ୍ର ତା'ର ଦୁଇ ହାତରେ ଦୁଇଟା ବଡ ବଡ କଟା ପଇଡ ଧରି ମୋ ପ୍ରତିକ୍ଷାରେ ଛିଡା ହେଇଛି । ନରେନ୍ଦ୍ରର ବିନମ୍ର ଅନୁରୋଧକୁ ଚେଷ୍ଟାକରି ମଧ୍ୟ ଏଡେଇ ଦେଇ ପାରିଲି ନାହିଁ । ପଇଡ ଦୁଇଟିକୁ ଆକଣ୍ଠ ପାନକରିସାରି ଦେଖେତ ରିକ୍ସାଟିଏ ଆସି ମୋ ପାଖରେ ହାଜର । ନରେନ୍ଦ୍ର ରିକ୍ସାବାଲାକୁ ଦଶଟଙ୍କିଆ ନୋଟଟିଏ ବଢେଇ ଦେଇ କହିଲା, "ବାବୁ ଯୋଉଠିକି କହିବେ, ନେଇଯିବୁ ।"

"ଦେଖ ନରେନ୍ଦ୍ର, ତମେ ଗରୀବ ଲୋକ । ମୋ ପାଇଁ ତମେ ଏତେଟା ଖର୍ଚ୍ଚାନ୍ତ ହେବା ମୁଁ ଆଦୌ ପସନ୍ଦ କରେନା ।" ମୁଁ ବାଧ ହୋଇ ପ୍ରତିବାଦ କଲି ।

"ସାର, ମୁଁ ତ ଗରୀବ ଲୋକ । ଘରୁ ଆଣି ମୁଁ କ'ଣ ଆପଣଙ୍କ ପାଇଁ ଖର୍ଚ୍ଚ କରିପାରିବି ? ଭଗବାନଙ୍କ କୃପାରୁ ଯାହା କିଛି ମିଳିଛି, ସେଇଥିରେ ଆପଣଙ୍କ ସାହାଯ୍ୟର ଋଣ ସୁଝିବାକୁ ଚେଷ୍ଟା କରିଛି ।"

" ମାନେ ? ମୁଁ ତ ତମକୁ କିଛି ସାହାଯ୍ୟ କରିନି ।" ମୁଁ କିଛି ନବୁଝିଲା ଭଳି ପ୍ରଶ୍ନକଲି ।

"ଆପଣ ମତେ ପଛ ବସରେ ଆସିବାର ସୁଯୋଗ ଦେଇଥିବାରୁ ମୁଁ ଆଜି ପାଞ୍ଚଶହ ଟଙ୍କା ପାଇପାରିଛି । ଆପଣଙ୍କ ସାଙ୍ଗରେ 'ଚକାଡୋଳା' ବସ୍‌ରେ ଆସିଥିଲେ ଆପଣଙ୍କ ଭୟରେ ମୁଁ କିଛି କରି ପାରି ନଥାନ୍ତି । ତେଣୁ ଆଜିର ଉପାର୍ଜନରୁ କିଛିଟା ଆପଣଙ୍କ ପାଇଁ ଖର୍ଚ୍ଚ କରିବା କ'ଣ ମୋର କର୍ତ୍ତବ୍ୟ ନୁହେଁ ? " ନରେନ୍ଦ୍ର ଭାଷାରେ ପ୍ରଶ୍ନବାଚି ଥିଲେ ମଧ୍ୟ ମୋ ଆଡକୁ ସେ ଶଙ୍କିତ ଦୃଷ୍ଟିରେ ଚାହିଁ ରହିଥିଲା ।

ସେତେବେଳକୁ ମୁଣ୍ଡଟା ମୋର ଝିମ୍ ଝିମ୍ ହୋଇ ଆସୁଥାଏ । ଠିକ୍ ସେତିକି ବେଳେ ଅଳ୍ପ ଦୂରରେ ଛିଡା ହୋଇଥିବା ବସ୍ ପାଖରେ ବେଶ୍ କିଛି ଲୋକଙ୍କର ଭିଡ ଜମି ଆସୁଥାଏ । ବୁଢା ଭଦ୍ର ଲୋକ ଜଣେ ବସ୍ ଭିତରେ ମୁଣ୍ଡପିଟି କାନ୍ଦିବାରେ ଲାଗିଥାନ୍ତି । ତାଙ୍କ ମନିପର୍ସ ସହ ପାଞ୍ଚସହ ଟଙ୍କା ପକେଟମାର୍ ହୋଇଯାଇଥାଏ ।

ବସ୍ ଉପରୁ ଦୃଷ୍ଟି ଫେରାଇ ଦୀର୍ଘଶ୍ୱାସଟିଏ ଟାଣି ମୁଁ ନରେନ୍ଦ୍ରକୁ ଚାହିଁଲି । ସେତେବେଳକୁ ନରେନ୍ଦ୍ର ଚଞ୍ଚଳ ହୋଇଉଠୁଥାଏ ।

"ମତେ କ୍ଷମା କରିବେ ସାର୍ । ଆପଣଙ୍କୁ ଦେଇଥିବା ପ୍ରତିଶ୍ରୁତି ମୁଁ ରକ୍ଷା କରିପାରିଲି ନାହିଁ । ପୁଣି କେବେ ଭାଗ୍ୟରେ ଥିଲେ ଦେଖା ହେବ ।"

ନରେନ୍ଦ୍ର ଚାଲିଯାଉଥିଲା କ୍ଷିପ୍ର ଗତିରେ ଆଗକୁ ଆଗକୁ । ପଛକୁ ଫେରି ଚାହିଁବାର ଅବକାଶ ନଥିଲା ତା'ର । ମୁଁ କିନ୍ତୁ ଅପଲକ ନୟନରେ ତାକୁ ଚାହିଁରହିଥିଲି । ମୋ ଆଖି ସାମ୍ନାରେ ଭାସି ଉଠୁଥିଲା ନରେନ୍ଦ୍ରର ନିରୀହ ରୁଗ୍ଣ ଚେହେରା, ତା' ଭଉଣୀମାନଙ୍କର ଲୁହଭିଜା ଶୁଖିଲା ମୁହଁ, ତା'ର ଜେଲରୁ ବିଦାୟ ବେଳର ଆଶୀର୍ବାଦ ଭିକ୍ଷା ଏବଂ ତା' ପାଇଁ ପୁଣି ଖୋଲି ଯାଉଥିବା ଜେଲର ଲୁହା ଫାଟକ ।

# ମିଛ ଆଲୁଅ

ସେଦିନ ଶିବଚତୁର୍ଦ୍ଦଶୀ, ସୋମବାର । ଶିବ ଦର୍ଶନ ପାଇଁ ଶ୍ରୀମତୀଙ୍କର ଏକାନ୍ତ ଜିଦ୍ଦି । ଏପରି ପବିତ୍ର ଦିନରେ ତାଙ୍କ ପାଇଁ ସନ୍ଧ୍ୟାରେ ଘଣ୍ଟାଟିଏ ସମୟ ଯେମିତି ହେଲେ ବାହାର କରିବାକୁ ହବ ।

ସେତେବେଳେ ବାରିପଦା ସହରରେ ମୁଁ ଓକିଲାତି ପ୍ରାକ୍ଟିସ୍ କରୁଥାଏ । ୨୦ଟି ବର୍ଷର ଅକ୍ଳାନ୍ତ ଚେଷ୍ଟା ଓ ପ୍ରଗାଢ ନିଷ୍ଠା ଫଳରେ ଜଣେ ଦକ୍ଷ ଓକିଲ ହିସାବରେ ମୁଁ କ୍ଷେଶ ନାଁ କମେଇ ସାରିଥାଏ । ପ୍ରାକ୍ଟିସ୍ ମଧ ଖୁବ୍ ଭଲ ଚାଲିଥାଏ । ଅନ୍ୟ ଓକିଲ ମାନଙ୍କ ଭଳି ପଇସା ପଛରେ ଗୋଡାଇବାକୁ ମୁଁ ପସନ୍ଦ କରୁନଥିଲି । ସେଥିପାଇଁ ଲୋକମାନଙ୍କର ମୋ ପ୍ରତି ଗୋଟାଏ ଭିନ୍ନ ପ୍ରକାରର ଶ୍ରଦ୍ଧା ଓ ସମ୍ମାନ ଥାଏ । ଓକିଲାତିର ରୁଟିନ୍ ବନ୍ଧା କାମ ଭିତରେ ଏମିତି ଭାବରେ ମଜ୍ଜି ରହିବାକୁ ହୁଏ ଯେ, ବାହାର ଦୁନିଆକୁ ଆଖି ଟେକି ଚାହିଁବାକୁ ସମୟ ନଥାଏ । ସକାଳୁ ଉଠି ତରତରରେ ନିତ୍ୟକର୍ମ ସାରି ଚା' କପ୍‌ଟି ନେଇ ସାତଟାରୁ ଚାମ୍ବରରେ ବସିବାକୁ ପଡେ ଯେ ଦିନ ଦଶଟା । ତା' ପରେ କଚେରୀ । ତେଣୁ ଲଞ୍ଚଟା ମଧ ଶାନ୍ତିରେ ଖାଇ ହୁଏନା । ସାରା ଦିନ ଏ କୋର୍ଟରୁ ସେ କୋର୍ଟ ଦୌଡିବା ବହୁ କଷ୍ଟ ହୁଏ । ସେଠାରୁ ମୁକ୍ତି ମିଳୁ ମିଳୁ ପ୍ରାୟ ସାଢେ ପାଞ୍ଚ । ଘରେ ପହଞ୍ଚି ଟିକିଏ ଫ୍ରେସ୍ ହୋଇ ସାରି ପୁଣି ଚାମ୍ବରରେ ବସିବାକୁ ପଡେ । କ୍ଲାଏଣ୍ଟ ମାନଙ୍କ ସାଙ୍ଗରେ ବକ୍ ବକ୍ କରି କୌଣସି ଦିନ ରାତି ଏଗାରଟା ପୂର୍ବରୁ ଘର ଭିତରକୁ ପଶିହୁଏନା । ଘରଟିକୁ ଶ୍ରୀମତୀ ଯେ କେମିତି ଭାବେ ଚଳାନ୍ତି, ତାହା କେବଳ ତାଙ୍କୁ ହିଁ ଜଣା । ବିଛଣାରେ ପଡି ଗୋଟାଏ ଦୀର୍ଘଶ୍ୱାସ ମାରିସାରିଲା ପରେ ଲାଗେ ସତେ ଯେମିତି ସାରାଦିନର ଯନ୍ତ୍ରଣା ଉଭେଇ ଯାଇଛି । ଶ୍ରୀମତୀଙ୍କ ସହିତ ଦିପଦ ହସଖୁସିର କଥା ହେବାକୁ ହେଲେ ତାଙ୍କର ସୁନ୍ଦର ନିଦଟିକୁ ଭାଙ୍ଗିବାକୁ ଖୁବ୍ କଷ୍ଟ ଲାଗେ । ମୋ ପାଇଁ ସବୁଦିନ ରାତି ଅଧ ପର୍ଯ୍ୟନ୍ତ ଜଣେ ଲୋକ ଚେଇଁ ରହିବା କ'ଣ ସମ୍ଭବ ? ବେଳେବେଳେ ସେ ବିରକ୍ତ ହୋଇ କହନ୍ତି, "ଆଉ କିଛି ଦିନ ପରେ ତୁମ ପିଲାମାନଙ୍କ ପାଖରେ ତୁମକୁ ବାପା ବୋଲି ପରିଚୟ ନଦେଲେ ସେମାନେ ହୁଏତ ତୁମକୁ ଚିହ୍ନିପାରିବେନି ।" କଥାଟା ବି ମୋ ମନକୁ ବେଶ୍ ପାଏ । ହସ ଲାଗେ । ସତରେ ସାରାଦିନ ପିଲାମାନଙ୍କ ସହିତ ଦେଖା ହେବାର ସୁଯୋଗ ନଥାଏ । ତେଣୁ ସେମାନେ ଭୁଲିଯିବାଟା ସ୍ୱାଭାବିକ୍ । ବେଳେବେଳେ ନିଜଉପରେ ଏବଂ ନିଜ ପ୍ରଫେସନ୍ ଉପରେ ଭିଷଣ ବିରକ୍ତି ଆସେ । ତେବେ ମୁଁ ଯେ ପୃଥିବୀର ବ୍ୟସ୍ତତମ ଜୀବମାନଙ୍କ ମଧ୍ୟରୁ ଗୋଟିଏ, ଏକଥାଟି ଶ୍ରୀମତୀ ଆମର ବୁଝିପାରୁଥିଲେ ବି ସ୍ୱୀକାର କରିବାକୁ ନାରାଜ ।

ସେଦିନ ସନ୍ଧ୍ୟାରେ ମୋ ଅନିଚ୍ଛା ସତ୍ତ୍ୱେ ଶ୍ରୀମତୀ ଏବଂ ଆଠ ବର୍ଷର ପୁଅ ପିଣ୍ଟୁକୁ ସ୍କୁଟରରେ ବସେଇ ବାହାରିଲି ଶିବମନ୍ଦିର ଅଭିମୁଖେ । ମନ୍ଦିରଟି ସହରର ମୁଖ୍ୟ ସ୍ରୋତଠାରୁ ଟିକିଏ ଦୂରରେ । ବହୁ ପୁରୁଣା କାଳର ମନ୍ଦିର । ଭିତରେ ବିଦ୍ୟମାନ ସ୍ୱୟଂ ପଞ୍ଚଲିଙ୍ଗେଶ୍ୱର । ଭାରି ପ୍ରତ୍ୟକ୍ଷ ଦେବତା । ଡାକିଲେ ଜବାବ୍ ଦିଅନ୍ତି ବୋଲି ଶୁଣିଛି । ଯିଏ ଯାହା ମନାସେ କାହାରି ମନକାମନା ଅପୂର୍ଣ୍ଣ ରହେନାହିଁ ବୋଲି ମନ୍ଦିରର ପଣ୍ଡିତମାନେ ବଡ ଦମ୍ଭର ସହ କହନ୍ତି । ଅବଶ୍ୟ ସେଥିପାଇଁ ପୂଜାପାଠ ବାବଦରେ ଟିକିଏ ଅଧିକ ଖର୍ଚ୍ଚ କରିବାକୁ ପଡିଥାଏ । ମନ୍ଦିରର ବେଢା ଭିତର ଖୁବ୍ ପ୍ରଶସ୍ତ । ମୁଖ୍ୟ ମନ୍ଦିରର ଚାରିପଟେ ଅନ୍ୟାନ୍ୟ ଦେବତାମାନଙ୍କର ଛୋଟ ଛୋଟ ମନ୍ଦିର ମଧ ଅଛି । ମନ୍ଦିର ସାମ୍ନାରେ ଗୋଟିଏ କୋଣକୁ ଟିକିଏ ଅନ୍ଧାରିଆ ସ୍ଥାନ ଯେଉଁଠି ଭକ୍ତମାନେ ନିଜ ନିଜର ମନକାମନା ପୂର୍ଣ୍ଣ ହେବାର ଅନୁମାନ ମେଣ୍ଟାଇବାକୁ ମାସ ମାସ, ବର୍ଷ ବର୍ଷ ଧରି ଅଧିଆ ପଡନ୍ତି । କିନ୍ତୁ ପ୍ରକୃତରେ ସେମାନଙ୍କ ଭିତରେ କ'ଣ ଦିଆ ନିଆ ହୁଏ, ତାହା କେବଳ ସେହି ଶିବଲିଙ୍ଗ ଓ ବିଚରା ଅଧିଆ ପଡିଥିବା ଭକ୍ତ ବ୍ୟତୀତ ଅନ୍ୟ କେହି କିଛି ଜାଣିପାରନ୍ତି ନାହିଁ । ତେବେ ମୋଟା ମୋଟି ଏ ମନ୍ଦିରର ସଂସ୍କୃତି ଭାରତର ଅନ୍ୟାନ୍ୟ ମନ୍ଦିର ଠାରୁ ଭିନ୍ନ ନୁହେଁ ।

ମନ୍ଦିରର ମୁଖ୍ୟ ଫାଟକ ନିକଟରେ ବସିଥିବା କୁଷ୍ଠରୋଗୀଟି ପାଖରେ ଜୋତା ଗୁଡିକୁ ଜିମା ଦେଇ ଗୋଡ ବଢେଇଲୁ ମନ୍ଦିର ଭିତରକୁ । ଚମଡ଼ାର ଜୋତା ମନ୍ଦିର ଭିତରକୁ ଗଲେ ମନ୍ଦିରର ପବିତ୍ରତା କାଳେ ନଷ୍ଟ ହୋଇଯାଏ । ସେଥିପାଇଁ ମନ୍ଦିର ଭିତରକୁ ଜୋତା ମନା କିନ୍ତୁ ମନ୍ଦିର ଭିତରେ ଖୋଦ ଶିବଙ୍କ ସାମ୍ନାରେ ଖାଣ୍ଟି ଚମଡାର ମନିପର୍ସରୁ ଯୋଡିଏ ଟଙ୍କା ବାହାର କରି ଦକ୍ଷିଣା ଦେଲା ବେଳେ ତାକୁ ଶିବ ତ ଆଖି ବନ୍ଦ କରି ଥିବାରୁ ଦେଖିପାରନ୍ତି ନାହିଁ, ହେଲେ ପଣ୍ଡାମାନେ ବଡ ବଡ ଆଖିରେ ଦେଖୁଥିଲେ ମଧ ନ ଦେଖିବାର ଅଭିନୟ କରିଥାନ୍ତି । ଆହୁରି ମଧ ମନ୍ଦିର ଭିତରେ ଖାଣ୍ଟି ଗୋରୁ ଚମଡା କିମ୍ବା ଘୁସୁରି ଚମଡାରେ ତିଆରି ମୃଦଙ୍ଗରୁ ଉଚ୍ଚାଙ୍ଗ କୀର୍ତ୍ତନ ଶୁଣୁଥିବା ସମୟରେ ଭକ୍ତଗଣ, ପଣ୍ଡାମାନେ ଓ ଖୋଦ୍ ଶିବ ମହାଶୟ ଭୁଲିଯାଆନ୍ତି ଯେ, ସେଗୁଡିକ ଚମଡାରେ ତିଆରି ବୋଲି । ମନ୍ଦିର ବେଢା ଭିତରେ ପଣ୍ଡାମାନଙ୍କର ଧୂପ, ଦୀପ, ଫୁଲ ଓ ଭୋଗ ଇତ୍ୟାଦିର ଏକଚାଟିଆ ବେପାର ମଧ ବେଶ ବେପାରିଆ ମନୋବୃତ୍ତି ନେଇ ଚାଲିଥାଏ । ସେଥିରେ ଯେତେ ଯାହା ଠକାଠକି କଲେ ମଧ ଦୋଷ ନ ଥାଏ । ଯାହା ହେଲେ ବି ସେମାନେ ଦେବତାଙ୍କର ଅତି ଆତ୍ମୀୟ, ନିହାତି ପାଖ ଲୋକ ।

ସେଦିନ ମନ୍ଦିର ପରିସର ଏକଦମ୍ ଶୁନ୍‌ଶାନ୍ । ସେଭଳି ଦିନରେ ବେଶ୍ ଗହଳି ଚହଳି ଲାଗିବା କଥା । ଶ୍ରୀମତୀ କୌତୁହଳ ପ୍ରକାଶ କରି ପଚାରିଲେ, "ଆଜି ଏଠାରେ

କ'ଣ କେହି ଲୋକ ବାକ ଦୁଶୁନାହାଁନ୍ତି । '' ମୋର ତ ଆଗରୁ ଏସବୁ ଜାଗା ଉପରେ ଆଦୌ ଭଲ ଧାରଣା ନ ଥିଲା । ହଠାତ୍ ପାଟିରୁ ବାହାରି ଗଲା, ''ତମେ ଏଠିକି ଦିଅଁ ଦେଖିବାକୁ ଆସିଛ ନା ଲୋକ ଦେଖିବାକୁ ? '' ବାସ୍, ଶ୍ରୀମତୀ ଏଥର ଚୁପ୍ । ମନ୍ଦିର ପାଖରେ ପହଞ୍ଚି ଯାହା ଦେଖିଲି ସେଥିରେ ଯେତିକି ଆଶ୍ଚର୍ଯ୍ୟ ହେଲି ହତାଶ ମଧ ସେତିକି ହେଲି । ମନ୍ଦିର ଦୁଆରେ ଗୋଟେ ବଡ଼ ତାଲା ଝୁଲୁଛି । ବେଢ଼ା ଭିତର ସଂପୂର୍ଣ୍ଣ ଜନଶୂନ୍ୟ । ଅଧିଆ ପଡ଼ିବା ଘର ଫାଙ୍କା । ମତେ ଲାଗିଲା ସତେ ଯେମିତି ସେଠାରେ ଥିବା ଦିଅଁ ସବୁ ହତାଶ୍ ହୋଇ ଦୀର୍ଘଶ୍ୱାସ ପକାଉଛନ୍ତି । କଥା କ'ଣ ପଚାରିବାକୁ ମଧ ଲୋକଟିଏ ନାହିଁ । ଆମେ ମଧ ଦୀର୍ଘ ଶ୍ୱାସ ଟାଣି ଫାଟକ ପାଖକୁ ଫେରିଲୁ । ଶ୍ରୀମତୀଙ୍କୁ ଅପମାନଟା ବୋଧ ହୁଏ ଖୁବ୍ ବାଧିଥିଲା । ତେଣୁ ସେ ଚୁପ୍ ଚାପ୍ ମୋ ପଛରେ ଚାଲିଥିଲେ । ସବୁ ଆଶା ଆକାଂକ୍ଷା , ଘଟଣା ଅଘଟଣର ମୁକ ସାକ୍ଷୀ ସାଜି ବିଚରା କୁଷ୍ଠରୋଗୀଟି ଜୋତାଗୁଡ଼ିକୁ ଜଗି ବସିଥିଲା ଚାରଣା କି ଆଠଣା ପାଇବା ଆଶାରେ ।

''ଆଜି ମନ୍ଦିର ଶୁନ୍ ଶାନ୍ କାହିଁକିରେ? '' ଆଠଣିଟିଏ ତା' ହାତକୁ ବଢ଼ାଇ ଦେଇ ଯୋତା ପିନ୍ଧୁ ପିନ୍ଧୁ ପଚାରିଲି ।

'' ସ୍ତ୍ରୀ ଲୋକଟିଏ ଆଠ ଦିନ ହେଲା ମନ୍ଦିର ଭିତରେ ଅଧିଆ ପଡ଼ିଥିଲା । ତା'ର ତିନି ବର୍ଷର ପୁଅଟି ବହୁତ ବେମାର ଥିଲା । ଗତ ରାତିରେ କେହି ତା' ଉପରେ ପାଶବିକ ଅତ୍ୟାଚାର କଲା । ପୁଲିସ୍ ଆସି ଅଞ୍ଚଳ ସାରା ଖାନ୍ ତଲାସ୍ ଚଳେଇଛନ୍ତି । ପଣ୍ଡାମାନେ ଡରରେ ମନ୍ଦିରରେ ତାଲା ପକେଇ କିଏ କୁଆଡ଼େ ଲୁଚିଛନ୍ତି । ଏ ଖବର ଚାରିଆଡ଼େ ହାଲ୍ଲା ହୋଇଯାଇଛି । ନ ହେଲେ ଆଜି ଭଳିଆ ଦିନରେ ମୁଁ କ'ଣ ପାଞ୍ଚ ପଚିଶ କମେଇ ନ ଥାନ୍ତି ? ତମେ କ'ଣ ବାବୁ ବହୁତ ଦୂରରୁ ଆସିଛ ?'' ଲୋକଟି ମୋ ଆଡ଼କୁ ପ୍ରଶ୍ନବାଚି ଦୃଷ୍ଟିରେ ଚାହିଁ ରହିଥିଲା ।

ଛୋଟିଆ 'ହଁ' ଟିଏ ମାରି ସ୍କୁଟର ଷ୍ଟାର୍ଟ୍ କଲି । ଫେରିଲା ବେଳେ ମୁଁ ଖାଲି ରକ୍ତ ଚାଉଳ ଚୋବାଇ ହେଉଥିଲି ଶିବଙ୍କ ଉପରେ ଆଉ ଶ୍ରୀମତୀଙ୍କ ଉପରେ । ଶ୍ରୀମତୀ କିନ୍ତୁ ସଂପୂର୍ଣ୍ଣ ନିରବ ଥିଲେ । ବୋଧହୁଏ ତାଙ୍କ ଭାଷା ଅସଙ୍ଗତି ଦୋଷ ପାଇଁ ଅନୁତାପ କରୁଥିଲେ କିମ୍ୱା ତାଙ୍କ ଈଶ୍ୱର ବିଶ୍ୱାସରେ ଆଘାତ ଲାଗିଥିବାରୁ ଭାଙ୍ଗିପଡ଼ି ଚିନ୍ତା ମଗ୍ନ ଥିଲେ । ଆମ ସମସ୍ତଙ୍କ ଅନ୍ୟ ମନସ୍କତା ଭିତରେ ସ୍କୁଟର ଯାଇ ଘର ପାଖରେ ବ୍ରେକ୍ କସିଲା ।

ସେଇଟା ଥିଲା ମୋ' ପାଇଁ ଗୋଟିଏ ସ୍ମରଣୀୟ ସଂଧ୍ୟା । କାରଣ ପିଲାମାନଙ୍କ ସହିତ କଟାଇବାକୁ ସମୟ ପାଇଲି, ଅଥଚ ମନଟା ଅସ୍ଥିର । ଘର ଭିତରେ ପ୍ରଚଣ୍ଡ ନୀରବତା । ମନ ଭିତରେ ପ୍ରଚଣ୍ଡ ଝଡ଼ । ପାଖରେ ଥିଲେ ବି କେହି କାହାରିକୁ କିଛି କହି ପାରୁନାହୁଁ ।

ହଠାତ୍ ନୀରବତା ଭାଙ୍ଗି ପିଣ୍ଟୁ ପ୍ରଶ୍ନ କଲା, "ବାପା, ପାଶବିକ ଅତ୍ୟାଚାର କଣ ?" ମୁଁ ନିର୍ବାକ ହୋଇ ଚାହିଁ ରହିଲି ପିଣ୍ଟୁକୁ, କ'ଣ ତାକୁ ଜବାବ୍ ଦେବି, କି ଭାଷାରେ ତା' ପ୍ରଶ୍ନର ଉତ୍ତର ଦେବି । ମନର ସବୁ ଉଦ୍‌ବେଗକୁ ଚାପିରଖି ସରଳ ଭାବରେ କହିଲି, " ସବୁକଥା ପଢ଼ିଲେ ଜାଣିବୁ, ବଡ଼ ହେଲେ ଜାଣିବୁ ।" ଆଉ ଅଧିକ କ'ଣ ଉତ୍ତର ଦେଇପାରିଥାନ୍ତି । ସେଦିନ ସାରା ରାତି ଛଟପଟ ହେବାକୁ ଲାଗିଲି ଅଶାନ୍ତିରେ ।

ସକାଳୁ ସକାଳୁ ନିତ୍ୟକର୍ମ ସାରି ଛ'ଟାରେ ଚାମ୍ବର ଭିତରେ ପଶିଲି ବାକିଥା କାମ ଶେଷ କରିବା ଉଦ୍ଦେଶ୍ୟରେ । ମୋ ପଛେ ପଛେ ଲୋକଟିଏ ପରଦା ଆଡ଼େଇ ଚାମ୍ବର ଭିତରେ ପଶିଲା । ବୟସ ପ୍ରାୟ ଷାଠିଏ ପାଖାପାଖି । ମୁହଁ କାନ ଶୁଖିଲା ଶୁଖିଲା ଲାଗୁଥାଏ । ମୁଁ ଚେୟାରରେ ନ ବସୁଣୁ ଲୋକଟି ଲମ୍ବହୋଇ ମୋ ଗୋଡ଼କୁ ଧରି ଶୋଇଗଲା । "ମୋତେ ବଞ୍ଚାଇ ଦିଅନ୍ତୁ ବାବୁ ! ମୁଁ ମରିଯିବି । ମୋ ପିଲା ଛୁଆ ଭାସିଯିବେ । " ଲୋକଟି ଠକ୍ ଠକ୍ କରି ଚଟାଣରେ ମୁଣ୍ଡ ପିଟି ଦେଲା । ତାକୁ ତଳୁ ଉଠାଇ କଥା କ'ଣ ଜାଣିବାକୁ ଚାହିଁଲି । ଲୋକଟି ନିଶଙ୍କୋଚରେ ତା'ର ଦୁଷ୍କର୍ମର ଇତିହାସ ବଖାଣି ଚାଲିଥାଏ । ମୁଁ ସ୍ତବ୍ଧ ହୋଇ ଶୁଣୁଥାଏ । ଲୋକଟି ସେହି ପଞ୍ଚଲିଙ୍ଗେଶ୍ୱର ମନ୍ଦିରର ବଡ଼ ପଣ୍ଡା, ଯିଏ ଭୋଗକୁ ସ୍ପର୍ଶ ନ କଲେ ଦିଅଙ୍କ ପେଟକୁ ଦାନା ଯାଏ ନାହିଁ, ଯିଏ ସଂଧ୍ୟା ଆଳତୀ ନକଲେ ମନ୍ଦିର ପରିବେଶ ପବିତ୍ର ହୁଏନାହିଁ । ଇଏ ସେହି ମହାପୁରୁଷ ଯିଏ ଗତକାଲିର ପାଶବିକ ଅତ୍ୟାଚାରର ମୁଖ୍ୟ ଆସାମୀ ।

ସେତେବେଳକୁ ରାଗ ମୋର ଚରମ ଅବସ୍ଥାରେ ପହଞ୍ଚିଥାଏ ଏ ବୃଦ୍ଧ ବ୍ରାହ୍ମଣ ଉପରେ, ଏ ଅନ୍ଧ ବିଶ୍ୱାସଗ୍ରସ୍ତ ସମାଜ ଉପରେ ଏବଂ ଏ ଦେବତା ନାମଧାରୀ ପଥର ଉପରେ ।



# ନୀଳ ନୟନା

ନୀଳନୟନା ତା'ର ନୀଳଆଖି କୋଣରେ ଢଳେଇ ଆସିଥିବା ମୁକ୍ତାରଙ୍ଗର ଲୁହ ବିନ୍ଦୁ ଟୋପାକୁ ଲୁଚେଇବା ପାଇଁ ଯେତେ ଅପଚେଷ୍ଟା କରିଥିଲେ ସୁଦ୍ଧା ମୋ ସତର୍କ ଦୃଷ୍ଟିକୁ ଏଡେଇ ଦେଇ ପାରି ନଥିଲା । ଯେଉଁ କମନୀୟ ନୟନଯୁଗଳ ଉପରେ ହଜାର ହଜାର ଦର୍ଶକଙ୍କ ପ୍ରଲୁବ୍ଧ ଦୃଷ୍ଟି ନିବଦ୍ଧ ଥିଲା, ଯେଉଁ ନେତ୍ରର ତୀବ୍ର କଟାକ୍ଷରେ ବୃଦ୍ଧ ଦର୍ଶକ ମନରେ ମଧ୍ୟ ମଳୟର ଶିହରଣ ଖେଳିଯାଉଥିଲା, ଯେଉଁ ବିଚକ୍ଷଣ କଳାକାରର ଅଭିନୟ ନୈପୁଣ୍ୟ ଦେଖିବାକୁ ହଜାର ହଜାର ଦର୍ଶକ ଅପଲକ ଦୃଷ୍ଟିରେ ଚାହିଁ ରହିଥିଲେ, କରତାଳି ପିଟି ଉତ୍ସାହିତ କରୁଥିଲେ ତାର ଅଭିନବ ଅଭିନୟ ଶୈଳୀକୁ, ସେ ଆଖି କୋଣରେ ହଠାତ୍ ଲୁହ କାହିଁକି ? କ'ଣ ପାଇଁ ଏ ଅଶ୍ରୁ ? ନୀଳନୟନାର ଲୁହଭିଜା ଅସହାୟ ଆଖି ଦୁଇଟି ଉପରେ ଦୃଷ୍ଟି ନିବଦ୍ଧ କରି କେଜାଣି କାହିଁକି ମୋର କଳାକାର ମନ ଅସ୍ଥିର ହୋଇ ଉଠୁଥିଲା ।

ନୀଳନୟନାର ବୟସ ପଚିଶ ପାଖା ପାଖି । ଗୋଟିଏ ଚାଉଳରେ ଗଢା କମନୀୟ କାନ୍ତି । ଅଙ୍ଗେ ଅଙ୍ଗେ ଭରି ରହିଛି ଯୁବକ ମନଭୁଲା ଅଫୁରନ୍ତ ଯୌବନର ମହକଭରା ଲାବଣ୍ୟ । କିନ୍ତୁ ସବୁଠାରୁ ଅଧିକ ଆକର୍ଷଣୀୟ ଥିଲା ତା'ର ଅର୍ଦ୍ଧନିମିଳିତ ନୀଳବର୍ଣ୍ଣର ନୟନଯୁଗଳ । ଥରେ ଦୃଷ୍ଟି ପଡିଲେ ସହଜରେ ଆଖି ଫେରି ଆସିବାକୁ ଚାହେଁନି ।

ନୀଳନୟନା ହିଁ ଥିଲା ସେ ଦିନର ମୁଖ୍ୟ ଆକର୍ଷଣ । ହଜାର ହଜାର ସଂଖ୍ୟାର ଭରପୁର ଦର୍ଶକମାନଙ୍କ ଗହଣରେ ସେଦିନ ଚାଲିଥାଏ "ଅନୁରାଧା" ଗଣନାଟ୍ୟର ଯାତ୍ରା ଅଭିନୟ । ପ୍ରଥମ ଶ୍ରେଣୀର ଟିକେଟ ଦୁଇଟି କାଟି ସେଦିନ ମୁଁ ସପତ୍ନୀକ ଯାତ୍ରାର କଳା ନୈପୁଣ୍ୟ ଉପଭୋଗ କରୁଥାଏ । ଅବଶ୍ୟ ଉଦ୍ୟୋକ୍ତାମାନଙ୍କ ସହୃଦୟତାରୁ ଅଭିନୟମଞ୍ଚର ଠିକ୍ ପାଖରେ ପ୍ରଥମ ଧାଡିରେ ବସିବାର ସୁଯୋଗ ମିଳିଥାଏ । ସେଦିନ ପରିବେଷଣ କରାଯାଉଥାଏ ମନଛୁଆଁ ସାମାଜିକ ନାଟକଟିଏ, ଯାହାକି ଅନୁରାଧା ଗଣନାଟ୍ୟର ସେ ବର୍ଷର ଶ୍ରେଷ୍ଠ ପ୍ରଦର୍ଶିତ ନାଟକ । ନୀଳନୟନା ନାଟକର ମୁଖ୍ୟ ନାୟିକା । ଦର୍ଶକମାନଙ୍କ ମନ ମୁଗ୍ଧ କରି ନୀଳନୟନା ଅଭିନୟରେ ତା'ର ଶ୍ରେଷ୍ଠ ପାରଦର୍ଶିତା ପ୍ରଦର୍ଶନ କରିବାକୁ ଚେଷ୍ଟା କରୁଥାଏ । ନିଖୁଣ ଅଭିନୟ , ଅତି ଚମତ୍କାର ତା'ର ନିଜସ୍ୱ ଅଭିନୟ ଶୈଳୀ । ସବୁ ଦର୍ଶକମାନଙ୍କ ମୁହଁରେ ଭୂରିଭୂରି ପ୍ରଶଂସା । ନାଟକ ଆଗେଇ ଚାଲିଥାଏ । ଗୋଟିଏ ଦୃଶ୍ୟରେ ନୀଳନୟନା ତା'ର ନାୟକ ସହିତ ବିଭିନ୍ନ ଭଙ୍ଗୀରେ ନୃତ୍ୟ ପରିବେଷଣ କରୁଥାଏ । ନୃତ୍ୟର ଗୋଟିଏ ମୁଦ୍ରାର ନାୟକ ନାୟିକାଙ୍କର ସ୍ଥିର ହୋଇଯିବାର ଦୃଶ୍ୟ । ସେତେବେଳେ ନୀଳନୟନା ସାମ୍ନା କରିଥାଏ ଆମକୁ ଅର୍ଥାତ୍ ମୋତେ ଏବଂ ମୋ ପାଖରେ ବସିଥିବା ପଦ୍ମାକୁ । ପଦ୍ମା ମୋର ଧର୍ମପତ୍ନୀ । ରୂପରେ, ଗୁଣରେ, ଆଦର୍ଶରେ, ସ୍ୱାଭିମାନରେ ସବୁଥିରେ ସେ ଥିଲା ଆଗୁଆ । ନୀଳନୟନାର ଦୃଷ୍ଟି ପଦ୍ମାଉପରେ ନିବଦ୍ଧଥାଏ । ପଦ୍ମାର ଅପାଦମସ୍ତକ ଲକ୍ଷ୍ୟକରି ସାରିବା ପରେ ତା'ର ଆଖି ଉପରେ ନୀଳନୟନାର ଦୃଷ୍ଟି କିଛିକ୍ଷଣ

ପାଇଁ ନିବଦ୍ଧ ହେଲା । କେଜାଣି କାହିଁକି ପଦ୍ମାର ଲିପ୍‌ଷ୍ଟିକ୍ ମଖା ନାଲି ଓଠ କୋଣରେ ହସର ଭଙ୍ଗାବାଦଲ ଖଣ୍ଡିଏ ଭାସିଯିବାର ମୁଁ ଲକ୍ଷ୍ୟ କଲି । ନୀଳନୟନା ସେମିତି ଚାହିଁ ରହିଥାଏ ଅପଲକ ନୟନରେ ପଦ୍ମାର ମୁଖମଣ୍ଡଳକୁ । ହଠାତ୍ ତା'ର ପ୍ରଫୁଲ୍ଲ ମୁଖଶ୍ରୀରେ ମଳିନତାର ଚିତ୍ର ସ୍ପଷ୍ଟ ହୋଇ ଉଠିଲା । ତା'ର ଦୁଇ ଆଖି କୋଣରେ ସଦ୍ୟ ଝରି ଆସୁଥିବା ଦୁଇଟୋପା ଲୁହ ଚକ୍ ଚକ୍ କରିବାକୁ ଲାଗିଲା । ସେ କିନ୍ତୁ ଥିଲା ନିର୍ବାକ, ନିଶ୍ଚଳ, ମୋହଗ୍ରସ୍ତା । ସେ ହୁଏତ ସେତେବେଳେ ଭୁଲିଯାଇଥିଲା ଯେ ସେ ଅଭିନୟରତା, ସେ ହୁଏତ ଜାଣି ପାରୁନଥିଲା ଯେ ତା' ସାମ୍ନାରେ ତାକୁ ହିଁ ଲକ୍ଷ୍ୟକରିଛନ୍ତି ହଜାର ହଜାର ସଂଖ୍ୟାର ତା'ରି ପ୍ରଶଂସକ ଦର୍ଶକ, ସେ ହୁଏତ ଶୁଣି ପାରୁନଥିଲା ନୃତ୍ୟ ସଂଗୀତର ଉଚାଟ ମୂର୍ଚ୍ଛନା, ସେ ହୁଏତ ହଜିଯାଇଥିଲା କେଉଁ ଏକ ଅଭୁଲା ସ୍ୱପ୍ନ ରାଜ୍ୟରେ କିମ୍ବା ମୁକୁଳି ପାରୁନଥିଲା କେଉଁ ଏକ ଅଗମ୍ୟ ଚିନ୍ତା ନଗରୀରୁ ।

ମୋହଗ୍ରସ୍ତା ନୀଳନୟନା ଉପଲବ୍ଧି କରୁଥିଲା ସତେ ଯେମିତି ପଦ୍ମା ଭିତରେ ଭରି ରହିଛି ସମଗ୍ର ନାରୀ ଜାତିର ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ, ଐଶ୍ୱର୍ଯ୍ୟ ଏବଂ ଆହୁରି ଅନେକ କିଛି । ସେ ନିଜେ ଜଣେ ସୁଗୁଣ ସମ୍ପନ୍ନା ନାରୀ ହୋଇ ମଧ୍ୟ ନିଜକୁ ତୁଚ୍ଛ ମଣୁଥିଲା ପଦ୍ମା ନିକଟରେ, ସମଗ୍ର ନାରୀ ସମାଜ ନିକଟରେ । ସେ ହୁଏତ ଚିନ୍ତା କରିବାକୁ ସମୟ କିମ୍ବା ସୁଯୋଗ ପାଇନଥିଲା ଯେ ତା'ପାଖରେ ଅଛି ଅପରୂପ ସୌନ୍ଦର୍ଯ୍ୟ, ସ୍ୱୟଂ ଶିବଙ୍କର ତପସ୍ୟା ଭଙ୍ଗ କଲାଭଳି ନବଯୌବନର ଅଫୁରନ୍ତ ରୂପ ସମ୍ଭାର, ଆଧୁନିକ ଶିକ୍ଷା ସଭ୍ୟତାର ଆଲୋକ, ଜଣେ ଦକ୍ଷ ଅଭିନେତ୍ରୀର ସୁନାମ ଏବଂ ପାରଦର୍ଶିତା । ଏତେ କିଛି ଥାଇ ମଧ୍ୟ ହଠାତ୍ ତା'ର ଏ ଅସହାୟତା କ'ଣ ପାଇଁ ? କ'ଣ ପାଇଁ ସେ ପଦ୍ମାକୁ ସାମ୍ନାକରି ପାରୁନି ? ସବୁକିଛି ଥାଇ ମଧ୍ୟ ସେ ଆଜି ନିଃସ୍ୱ । ତା'ପଛରେ ବହୁ ପ୍ରଶଂସା, ବହୁ ସମର୍ଥନ ଥାଇ ମଧ୍ୟ ତା'କୁ ଯେମିତି ସାହା ଭରସା ହେବାକୁ କେହି ନାହିଁ । ଏତେ ରୂପଗୁଣ ଯୌବନର ଅଧିକାରିଣୀ ହୋଇ ସୁଦ୍ଧା ସେ କ'ଣ ଦିନେ ଚାହିଁ ନ ଥିଲା ଠିକ୍ ପଦ୍ମାଭଳି କୁଳବଧୂଟିଏ ସାଜି ସ୍ୱାମୀ ସନ୍ତାନମାନଙ୍କୁ ନେଇ ହସ ଖୁସିର ସୁନ୍ଦର ସଂସାରଟିଏ ଗଢିତୋଳିବାକୁ ? ସେ କ'ଣ ଚାହିଁ ନଥିଲା ତା'ର କନ୍ଦର୍ପସୁନ୍ଦର ସ୍ୱାମୀ କୋଳରେ ମୁଣ୍ଡ ରଖି ସାରାଜୀବନ ଅତିବାହିତ କରିବାକୁ, ସୁଗନ୍ଧିତ ଗୋଲାପଟିଏ ସାଜି ତା'ର କାମ ଜର୍ଜରିତ ଭ୍ରମର ସ୍ୱାମୀଙ୍କୁ ଆକଣ୍ଠ ମଧୁ ପିଆଇ ମତୁଆଲା କରିବାକୁ, ଅବଗୁଣ୍ଠନବତୀ ହୋଇ ଆଦର୍ଶ କୁଳବଧୂଟିଏ ସାଜିବାକୁ, ଲାଲ୍ ଟୁକ୍‌ଟୁକ୍ କୁନ୍‌ମୁନ୍‌ଟିଏ କୋଳରେ ଧରି ନାରୀଜନ୍ମକୁ ସାର୍ଥକ କରିବାକୁ, ସନ୍ତାନ ଲାଳନ ପାଳନର ସୁଚିନ୍ତିତ ଯୋଜନା କରି ମାତୃତ୍ୱର ପରାକାଷ୍ଠା ଦେଖାଇବାକୁ ? କିନ୍ତୁ ସେ ଆଜି ପାଇଛି କ'ଣ ? ହୋଇପାରିଛି ବା କ'ଣ ? ଗୋଟାଏ ସାମନ୍ୟ ଅଭିନେତ୍ରୀ, ଯାହାର ସମାଜରେ ସ୍ଥିତିନାହିଁ, ସ୍ୱୀକୃତି ନାହିଁ । କେବଳ ହଜାର ହଜାର ମାଂସଲୋଭୀ ଦର୍ଶକମାନଙ୍କ ସାମ୍ନାରେ ନିଜର ଯୌବନ ପରିସ୍ଫୁଟ କରି ଗୋଟାଏ ଭିନ୍ନ ସ୍ୱାଦର ଗଣିକା ଜୀବନ ନିର୍ବାହ ବ୍ୟତିତ ତା' ସାମ୍ନାରେ ଅନ୍ୟ କ'ଣ ବା ରାସ୍ତା ଅଛି ? ନିଜର ମନଲାଖି ସୁନାର ସଂସାରଟିଏ ଗଢିବାକୁ ସେ ଏବେ ମଧ୍ୟ ବ୍ୟାକୁଳ । କିନ୍ତୁ ଏ ସ୍ୱାର୍ଥପର ସମାଜରେ ତାକୁ ସ୍ୱୀକୃତି

ଦେବାକୁ ଆଗେଇ ଅସିବ ବା କିଏ ? ଅଭିନେତ୍ରୀଟିଏ ସାଜି ବହୁରାସ୍ତା ଅତିକ୍ରମ କରିଗଲା ପରେ ସବୁଯାକ କଳଙ୍କର ବୋଝ ମୁଣ୍ଡେଇବାକୁ ତ ଏଇ ସମାଜହିଁ ତାକୁ ବାଧ କରିଛି । ଏ କଳଙ୍କର କାଳୀମା ସେ ଧୋଇ ପାରିବ ବା କେମିତି ? କିନ୍ତୁ ଅଭିନେତ୍ରୀଟିଏ ସାଜି ଅନ୍ୟକୁ ଆମୋଦ ଦେବା, ମିଛ ଅଭିନୟ କରି ଅନ୍ୟକୁ ଆପ୍ୟାୟିତ କରିବାରେ ସେ କଳଙ୍କିନୀ ହୋଇଗଲା ବା କେମିତି ? ତା'ର ଦେହ ମନ ସଦା ପବିତ୍ର । ସେ ତ ତଥା-କଥିତ ଅପବିତ୍ରତାକୁ କେବେବି ସ୍ପର୍ଶ କରିବାକୁ ଚାହିଁନି କିମ୍ବା ପ୍ରଲୋଭନର ବଶବର୍ତ୍ତି ହୋଇ ସେ ଦିଗକୁ ଗୋଡ ମଧ୍ୟ ବଢ଼ାଇନି । ସେ ଯାହାକିଛି କରିଛି କେବଳ ଅଭିନୟରେ ହିଁ କରିଛି, ଏଥିରେ ତା'ର ଭୁଲ ବା ରହିଲା କେଉଁଠି ?

ନୀଳନୟନାର ଠିକ୍ ମନେ ଅଛି ଯେଉଁଦିନ ତା'ର ରୋଗଗ୍ରସ୍ତ ବୁଢା ବାପା ଖାଦ୍ୟ ଏବଂ ଔଷଧ ଟିକିଏ ପାଇଁ ଡହଳବିକଳ ହୋଇ ସବୁଦିନ ପାଇଁ ଆଖିବୁଜି ଦେଲା । ସେତେବେଳକୁ ସେ ବି.ଏ. ପଢୁଥାଏ । ଅସରନ୍ତି ଅଭାବ ଅନାଟନ ଭିତରେ ତା'ର ନିଜର ଗଭୀର ମନୋବଳ ଯୋଗୁଁ ସେ ହୁଏତ ବି. ଏ. ପାସ୍ କରିଗଲା । ସାର୍ଟିଫିକେଟ୍‌ଟି ଧରି ଚାକିରୀ ଖଣ୍ଡିଏ ପାଇଁ ବେଶ୍ କିଛିଦିନ ରାସ୍ତାରୁ ଅରାସ୍ତା, ଅରାସ୍ତାରୁ ପୁଣି ରାସ୍ତା, ଖୁବ୍ ସେ ଦେଖିଲା ମିଛ ମରିଚିକା ପଛରେ ଧାଇଁ ଧାଇଁ । କିନ୍ତୁ ଶେଷରେ ନିରାଶ ହେଲା । ହିତାକାଂକ୍ଷୀ ବନ୍ଧୁବାନ୍ଧବମାନେ ଅବଶ୍ୟ କିଛିଟା ଆନ୍ତରିକତା ଦେଖାଇଥିଲେ ତା'କୁ ସାହାଯ୍ୟ କରିବାପାଇଁ, ତା'କୁ କୌଣସି ଅପାତ୍ରଟିଏ ସହିତ ସବୁଦିନ ପାଇଁ ଛନ୍ଦି ଦେବାକୁ । କିନ୍ତୁ ବାପା ମା' ଛେଉଣ୍ଡ ଦୁଇଟା ଛୋଟ ଛୋଟ ଭାଇଙ୍କ ମୁହଁକୁ ଚାହିଁଲା ନୀଳନୟନା । ଗୋଟିଏ ପାଖରେ ତା'ର ବଂଶର ଭବିଷ୍ୟତ ଛୋଟ ଛୋଟ ଭାଇ ଦୁଇଟି, ଅନ୍ୟପାଖରେ ତା'ର ଅନିଶ୍ଚିତ ସୁଖ ସଂସାର । ନୀଳନୟନା କିନ୍ତୁ ବାଛି ନେଇଥିଲା ପ୍ରଥମଟି । ଯେତେ ଝଡଝଂଝା ଦୁଃଖ ନିର୍ଯ୍ୟାତନା, ଅଭାବ ଅନାଟନ ଆସୁନା କାହିଁକି ସେ ତା'ର ବଂଶ ମର୍ଯ୍ୟାଦା ରକ୍ଷା କରିବ, ବାପାଙ୍କ ଅପୁରଣୀୟ କାର୍ଯ୍ୟ ସଂପୂର୍ଣ୍ଣ କରିବ ତା'ର ଭାଇମାନଙ୍କୁ ମଣିଷକରି ।

ଶେଷରେ ସେ ଅଭିନେତ୍ରୀ ଜୀବନ ବାଛିନେଲା ଏଇ ଅନୁରାଧା ନାଟ୍ୟ କମ୍ପାନୀରେ । ପାରିଶ୍ରମିକ ବାବଦ ଯାହାକିଛି ମିଳେ ସବୁତକ ପଠେଇ ଦିଏ ଭାଇମାନଙ୍କ ପାଖକୁ ନିଜକୁ ନିଃସ୍ୱକରି, ନିଜର ଭବିଷ୍ୟତକୁ ଜଳାଞ୍ଜଳି ଦେଇ । କିନ୍ତୁ ତା'ର ଏ ମହାନ ତ୍ୟାଗର ପରାକାଷ୍ଠାକୁ ଏ ସ୍ୱାର୍ଥପର ସମାଜ କ'ଣ ବା ମୂଲ୍ୟାୟନ କରିବ ? ବରଂ ପରିହାସ ବିଦ୍ରୁପର ଛଟା, କଳଙ୍କିନୀର ଆଖ୍ୟା, ମାନସିକ ସ୍ତରରେ ସାମାଜିକ ବାସନ୍ଦ ତା'କୁ ବହୁ ସମୟରେ ବ୍ୟସ୍ତ ବିବ୍ରତ କରି ପକାଏ । ସତରେ କେତେ ସ୍ୱାର୍ଥପର ଏ ସମାଜ ? ଯେଉଁମାନଙ୍କ ମନୋରଞ୍ଜନ ପାଇଁ ତା'ର ଏତେ ପ୍ରଚେଷ୍ଟା, ଏତେ ଅଧ୍ୟବସାୟ, ଏତେ ତ୍ୟାଗ ସେଇମାନଙ୍କ ନିକଟରେ ସେ ଆଜିଘୃଣାର ପାତ୍ରୀ । ସମାଜରେ ତା'ର ସ୍ଥିତିନାହିଁ, ସ୍ୱୀକୃତି ନାହିଁ, ଭବିଷ୍ୟତ ମଧ୍ୟ ନାହିଁ । କିନ୍ତୁ କାହିଁକି ? କ'ଣ ତା'ର ଅପରାଧ ? ନାଁ ସେ ଏ ବିଷୟରେ କାହାକୁ ମୁହଁ ଖୋଲି ପଚାରି ପାରୁଛି, ନାଁ ତାକୁ କେହି ଦୋଷୀସାବ୍ୟସ୍ତ କରି ଅପରାଧୀର କାଠଗଡାରେ ଛିଡାକରାଇ ପାରୁଛି । କେବଳ ସନ୍ଦେହର ଲୁଚକାଳି

ଖେଳଭିତରେ ସେ ଯେମିତି ଅଣ ନିଶ୍ୱାସୀ ହୋଇ ପଡୁଛି । ଏ ସତ୍ୟକୁ ସେ ବହୁଦିନରୁ ତା'ର ଅଭିନେତ୍ରୀ ଜୀବନରେ ଅଙ୍ଗେ ଅଙ୍ଗେ ଉପଲବ୍ଧି କରିଥିଲେ ମଧ୍ୟ ସାମ୍ନାସାମ୍ନି ସ୍ୱୀକାର କରିପାରି ନଥିଲା । ଅଭିନୟ ମଞ୍ଚଉପରେ ଛିଡା ହୋଇ ସେ ବହୁ ଦର୍ଶକ-ଦର୍ଶିକାଙ୍କୁ ଦେଖିଛି, ବହୁତ ନିକଟରୁ ଦେଖିଛି, ଅନେକ ସମାଲୋଚନା ମୁହାଁମୁହିଁ ଶୁଣିଛି, ହେଲେ ଏତେ ବଡ ନିଛକ ସତ୍ୟକୁ ସେ କେବେ ବି ଉପଲବ୍ଧି କରିପାରି ନଥିଲା । କିନ୍ତୁ କେଜାଣି କାହିଁକି ପଦ୍ମାର ସାମାନ୍ୟ ସ୍ମିତହାସ୍ୟ ପଛରେ କିଛି ଉଦ୍ଦେଶ୍ୟ ଥାଉ ବା ନଥାଉ, ନୀଳନୟନାକୁ ତାହା ରାକ୍ଷସି ସାଜି ବିଦ୍ରୁପ କରୁଥିଲା, ରାହୁସାଜି ଗ୍ରାସ କରିବାକୁ ବସିଥିଲା, ସମାଲୋଚକ ସାଜି ଧିକ୍କାର କରୁଥିଲା । ସେ ପ୍ରକାର ବିଦ୍ରୁପକୁ ସେ ସ୍ୱାଗତ କରିପାରୁ ନଥିଲା, ମୁହଁ ବୁଲାଇ ଅସ୍ୱୀକାର ମଧ୍ୟ କରିପାରୁନଥିଲା । ସତରେ ବଡ ଅସହାୟ ହୋଇ ପଡିଥିଲା ବିଚାରୀ ନୀଳନୟନା । ସେ ଅସ୍ଥିର ହୋଇ ଉଠି ସ୍ଥିର ହୋଇଗଲା, ଉପଲବ୍ଧ ସତ୍ୟର ପ୍ରଚଣ୍ଡ ଆଘାତରେ ସେ ସ୍ତବ୍ଧ ହୋଇଗଲା, ସମସ୍ତ ଚେତନାର ତଡିତ୍ ପ୍ରବାହ ତାକୁ କ୍ଷଣିକ ପାଇଁ ଅବଚେତନ ଅବସ୍ଥାକୁ ନେଇଯାଇଥିଲା । ସେ ଭୁଲିଯାଇଥିଲା ତା'ର ସ୍ଥିତି, ଭୁଲିଯାଇଥିଲା ପରିବେଶ ଓ ସମୟର ତାରତମ୍ୟ ।

ମଞ୍ଚ ଉପରୁ ଆଲୋକ ଲିଭିଯିବା ପରେ ସେ ତା'ର ସଂଜ୍ଞା ଫେରିପାଇଥିଲା, ଫେରି ଆସିଥିଲା ବାସ୍ତବ ଜୀବନକୁ । ଅଣନିଶ୍ୱାସୀ ହୋଇ ସେ ଦୌଡି ଯାଇଥିଲା ଗ୍ରୀନ୍‌ରୁମ୍‌କୁ । ତା'ର ନିହାତି ବ୍ୟକ୍ତିଗତ, ସବୁଠୁ ଆପଣାର ସେଇ ପୁରୁଣା ଅଧାଭଙ୍ଗା ଟିଣବାକ୍ସ ଉପରେ ପଡିରହି ସେ ଭୋ ଭୋ କରି ଖୁବ୍ କାନ୍ଦିଥିଲା । ସବୁତକ ଲୁହ ନିଗାଡି ନିଃଶେଷ କରିଦେବାକୁ ଚେଷ୍ଟାକରିଥିଲା, ଠିକ୍ ଯେମିତି ସେଦିନ ସେ କାନ୍ଦିଥିଲା ତାର ସ୍ୱର୍ଗଗାମୀ ବାପାଙ୍କର ନିର୍ଜୀବ ଶରୀର ଉପରେ ଲୋଟିପଡି । ତା' ଆଖିର ପ୍ରତ୍ୟେକ ବିନ୍ଦୁ ଲୁହ ମତେ ସ୍ପଷ୍ଟ ଦେଖା ଯାଉଥିଲା । ମୋର ପ୍ରତିଟି ତନ୍ତ୍ରୀ କେଜାଣି କାହିଁକି ଝଙ୍କି ଉଠୁଥିଲେ । ମୁଁ ଅସ୍ଥିର ହୋଇ ଉଠୁଥିଲି । ନୀଳନୟନାର କରୁଣକ୍ରନ୍ଦନ ପଦ୍ମାର କାନ ପର୍ଯ୍ୟନ୍ତ ପହଞ୍ଚି ପାରୁଥିଲା କି ନାହିଁ, ସେ କିନ୍ତୁ ବେଶ୍ ଅବିଚଳିତ ଥିଲା, ଗମ୍ଭୀର ଥିଲା । ସେଦିନ ନାଟକର ପରବର୍ତ୍ତି ଦୃଶ୍ୟଗୁଡିକ ଗୋଟିକ ପରେ ଗୋଟିଏ ସୁଖ ଦୁଃଖ, ହସ-କାନ୍ଦ ଓ ରୋମାଞ୍ଚଭରା ପର୍ଯ୍ୟାୟ ଦେଇ ଆଗେଇ ଚାଲିଲା । କିନ୍ତୁ ମତେ ସବୁଠୁ ବେଶି ଆଶ୍ଚର୍ଯ୍ୟାନ୍ୱିତ କରି ନୀଳନୟନା ପରବର୍ତ୍ତୀ ଦୃଶ୍ୟଗୁଡିକରେ ନାୟୀକା ଭୂମିକାରେ ନିଖୁଣ ଅଭିନୟ କରିଗଲା ଦର୍ଶକମାନଙ୍କ ଭୁରିଭୁରି ପ୍ରଶଂସାର କରତାଳି ମାଡ ଭିତରେ । କିଛି ସମୟପୂର୍ବରୁ ତା'ର ମାନସିକ ସ୍ତରରେ କୌଣସି ଦୁର୍ଘଟଣା ଘଟିଥିଲା, ସେ କଥା ସେ କୌଣସି ଦର୍ଶକକୁ ଜାଣିବାକୁ ସୁଯୋଗ ପର୍ଯ୍ୟନ୍ତ ଦେଇନଥିଲା । ସେ ଦିନର ନାଟକଟି ଆମୂଳଚୂଳ ବେଶ୍ ଉପଭୋଗ୍ୟ, ବେଶ୍ ହୃଦୟସ୍ପର୍ଶୀ ହୋଇ ଥିଲେ ସୁଦ୍ଧା ମୋ ଦୃଷ୍ଟିରେ ସେ ଥିଲା ଅଭିନୟ, ଅବାସ୍ତବ, ସତ୍ୟର ଅପଳାପ । କେବଳ ବାସ୍ତବ ଏବଂ ନିଷ୍ଠୁର ସତ୍ୟ ଥିଲା ନୀଳନୟନାର ନୀଳଆଖି କୋଣରେ ଢଳେଇ ଆସିଥିବା ଦୁଇ ଟୋପା ମୋତି ରଂଗର ଲୁହ, ତା'ର କଇଁ କଇଁ କାନ୍ଦର କୋହ, ଯାହା ମୋର କଳାକାର ହୃଦୟର ଗଭୀରତମ ଅଂଶରେ ପ୍ରଚଣ୍ଡ ଆଘାତ ଦେଇଥିଲା ।

# ମୁଖା

ଜୀବନସ୍ରୋତ ପୂଜା ବଜାର ଭିତରେ ଚକାଭଉଁରୀ ଖେଳୁଥିଲା । ସବୁଠି ଭରି ରହିଥିଲା ଦଶହରାର ମହମହ ବାସ୍ନା । ସାରା ସହରରେ ପୂଜା ବଜାରର ସରଗରମ ହାୱା । ସବୁଠି ଖଚା ଖଚ୍ ଭିଡ । ଜଗତ୍‌ଜନନୀ ମା' ଦୁର୍ଗାଙ୍କର ଆବାହନୀ ଧ୍ୱନୀରେ ଚତୁର୍ଦ୍ଦିଗ ପ୍ରକମ୍ପିତ । ସବୁରି ମନରେ ଆନନ୍ଦର ଫଲ୍‌ଗୁ ।

ବିଚରା ଶୁକୁଟା ଯେନା ତା' ମାଲିକ ଠାରୁ ମଜୁରୀ ବାବଦକୁ ଆଣିଥିବା ପୁରୁଣା ଦଶଟଙ୍କିଆ ନୋଟ୍‌ଟିକୁ ଅଣ୍ଟିରେ ଖୋସି କୋଚଟ ମଇଳା ଅଖା ବ୍ୟାଗ ଖଣ୍ଡିକ ହାତରେ ଧରି ଚାଲିଥାଏ ବଜାର ଭିତରେ ଦି' କିଲୋ ଚାଉଳର ସଉଦା କରିବା ପାଇଁ । ଗରମ ବଜାରଟା ଭିତରେ ବି ତାକୁ ଶୀତ ଶୀତ ଲାଗୁଥାଏ । ତା'ର ଫୁଙ୍ଗୁଳା ଦେହ ଆଉ ନିର୍ଲିପ୍ତ ମନ ଭିତରର ଥଣ୍ଡାକୁ ଅତିକ୍ରମ କରି ସହରର ଗରମ ହାୱା ତା' ହୃଦୟକୁ ସ୍ପର୍ଶ ପରିପାରୁ ନଥାଏ । ବଜାରର ମୁଖ୍ୟ ଛକ ପାରହେବା ପରେ ଶୁକୁଟା ପାଇଁ ଉଦ୍ଦିଷ୍ଟ କଂଟ୍ରୋଲ ଦୋକାନ । ସେ ଏକମୁହାଁ ହୋଇ ଚାଲିଛି ତା' ଗନ୍ତବ୍ୟ ସ୍ଥଳକୁ । କିନ୍ତୁ ଛକ ଉପରେ ସେଦିନ ଅସମ୍ଭବ ଭିଡ । ବଜାର ଛକଟା ଉପରେ ପଥପ୍ରାନ୍ତ ସଭା । ମଣିଷ ଫସଲର ଭରପୁର ଭିଡ । ଭିତରକୁ ଧସେଇ ପଶିବାର ସତ୍‌ସାହସ ନଥିଲା ଶୁକୁଟାର । ବାଧ୍ୟ ଶିଶୁଟି ପରି ରାସ୍ତା କଡରେ ଛିଡାହୋଇ ରହିଲା ନିଜର ଆଖି ଓ କାନକୁ ସଂପୂର୍ଣ ଖୋଲାରଖି । ଓଜସ୍ୱିନୀ ଭାଷଣର ଖରସ୍ରୋତା ବିଦ୍ ବଜାର ଉପରେ ପ୍ରଖର ଗତିରେ ପ୍ରବାହିତ । ଶ୍ରୋତାମାନେ ସ୍ତବ୍‌ଧ ହୋଇ ଶୁଣି ଚାଲିଥିଲେ ନିର୍ବିକାର ଚିତ୍ତରେ । ମଝିରେ ମଝିରେ କରତାଳି ଶବ୍ଦରେ ସଭାସ୍ଥଳୀ ବେଶ୍ ଉତ୍‌ଫୁଲିତ ହୋଇ ଉଠୁଥିଲା । ଶୁକୁଟା ମଧ୍ୟ ତାଳିମାରିବାକୁ ଚେଷ୍ଟା କରିଥିଲା ଅନ୍ୟମାନଙ୍କ ତାଳି ସହିତ ତାଳଦେଇ, ହସିବାକୁ ଚେଷ୍ଟା କରିଥିଲା ଅନ୍ୟମାନଙ୍କ ହସ ସହିତ ହସ ମିଳାଇ, ବୁଝିବାକୁ ଚେଷ୍ଟା କରିଥିଲା ଅନ୍ୟମାନଙ୍କ ମନ ସହିତ ନିଜ ମନକୁ ସାମିଲ୍ କରି । କିନ୍ତୁ ତା'ର ତାଳି , ହସ ଏବଂ ବୁଝିବାର ଚେଷ୍ଟା ଅନ୍ୟମାନଙ୍କଠାରୁ ସ୍ପଷ୍ଟ ବାରିହୋଇ ପଡୁଥିଲା, ଠିକ୍ ଯେମିତି ତା'ର ଚାଲିଚଳଣି, ପରିପାଟି ଏବଂ ଆର୍ଥିକ ଅବସ୍ଥା ସ୍ୱତନ୍ତ୍ର ଭାବରେ ଭିନ୍ନଥିଲା ଅନ୍ୟମାନଙ୍କ ଠାରୁ ।

ସେ ଖଟ ମୁଣ୍ଡେଇବା ଲୋକ । ମୁଣ୍ଡ ଖଟେଇ ଏତେ ବଡ ବଡ ଭାଷଣର ବିଜ୍ଞତାକୁ ବୁଝିବାର ସାମର୍ଥ୍ୟ ତା'ର ବା କାହିଁ ? ତଥାପି ତା'ର ଛୋଟିଆ ମୁଣ୍ଡରେ ବୁଦ୍ଧି ଖଟାଇ ସେ ଭାଷଣରୁ ଏତିକି ବୁଝିଥିଲା ଯେ ବଳିପ୍ରଥା ଗୋଟିଏ ସାମାଜିକ କଳଙ୍କ । ସବୁ ପ୍ରାଣୀଙ୍କର ନିଶ୍ଚିତ ବଞ୍ଚିବାର ଅଧିକାର ଅଛି ଭାରତ ଭଳି ଗଣତନ୍ତ୍ର ତଥା ଧର୍ମ ନିରପେକ୍ଷ ଦେଶରେ । କେଉଁ ଅଧିକାର ନେଇ, କେଉଁ ମହତ୍ ସାମାଜିକ ଉଦ୍ଦେଶ୍ୟ ନେଇ ନିରୀହ ନିର୍ବୋଧ

ପ୍ରାଣୀମାନଙ୍କୁ ହତ୍ୟା କରାଯାଉଛି ଦେବୀଙ୍କ ସମ୍ମୁଖରେ ? ଦେବୀ ତ କାହାକୁ ରକ୍ତ ମାଗି ନାହାନ୍ତି କି କାହାର ମାଂସ ଚାହିଁ ନାହାନ୍ତି । ତା' ହେଲେ ଏ ପଶୁବଳି, ଏ ପ୍ରାଣହାନୀ, ଏ ରକ୍ତପାତ, ଏ ନିଷ୍ଠୁରତା ,ଏ ଅନଧିକାରଚର୍ଚ୍ଚା କ'ଣ ପାଇଁ, କାହାପାଇଁ ? ତେଣୁ ଆଗାମୀ ଦଶହରାରେ ଦେବୀଙ୍କ ନିକଟରେ ବଳି ବିରୋଧ କରାଯିବ । ସେଥିପାଇଁ ସ୍ଥାନୀୟ ବଳିପ୍ରଥା ବିରୋଧ ସମିତି ତରଫରୁ ଜନସାଧାରଣଙ୍କ ସହଯୋଗ ପାଇଁ ପଥପ୍ରାନ୍ତ ସଭା ଜରିଆରେ ନିବେଦନ ଓ ଜନମତ ସଂଗ୍ରହର ଅଦମ୍ୟ ପ୍ରୟାସ । ଶୁକୁଟା ଅତି ଖୁସିରେ ମନେ ମନେ ଖୁବ୍ ଜୋର୍‌ରେ ହସିପକାଇଲା । ହୁଏତ ହୋଇପାରେ କଥାଟା ତା'ମନକୁ ଠିକ୍ ଭାବରେ ଛୁଇଁଲା । ନିଜ ଜଂଘରେ ନିଜ ହାତ ପାପୁଲି ବାଡେଇ କଥାଟାକୁ ସ୍ୱାଗତ ଜଣାଇଥିଲା । ଖଦଡ ଧୋତି-ପଞ୍ଜାବୀ ପିନ୍ଧା ଭାଷଣ ବାଣ୍ଟୁଥିବା ଧୋବଧୋବଳିଆମାନଙ୍କ ଉଦ୍ଦେଶ୍ୟରେ ତା'ର ଅବାଧ୍ୟ ମୁଣ୍ଡଟା ବୋଧହୁଏ ନଇଁ ଆସୁଥିଲା ଅତିମାତ୍ରାରେ ଭାବପ୍ରବଣତାର ପ୍ରଭାବରେ ।

ଶୁକୁଟା ଠାରୁ କିଛି ଦୂରରେ ଛିଡା ହୋଇଥିବା ଦୁଇଜଣ ମନ୍ଦିର ପୂଜକ ଫୁସ୍ ଫୁସ୍ କଥା ହେବାର ଶୁଣୁଥିଲା ଶୁକୁଟା । "ଏ ଦଳଟା କାହିଁକି ଯେ ବେକାର ଏମିତି ମାତିଛନ୍ତି କେଜାଣି ? ସତେ ଯେମିତି ସବୁ ତାଡି ପକେଇବେ । ହଇହେ, ବଳିପ୍ରଥା ଦେବୀଙ୍କ ପାଖରେ ପୁରୁଷାନୁକ୍ରମିକ ପରମ୍ପରା । ବଳି ବନ୍ଦହେଲେ ଦେବୀଙ୍କ ପ୍ରଚଣ୍ଡ କୋପରେ ଏ ପୃଥ୍ୱୀ ରହିବଟି ? ଏ ଦଳ ସମ୍ଭାଳିବେଟି ରଣଚଣ୍ଡୀ ପ୍ରତିମାକୁ ? ଯାଙ୍କ ଚଉଦ ପୁରୁଷରେ କେହି ବଳି ବନ୍ଦ କରିଥିଲେ ? ହଇହେ, ବଳି ଗୋଟାଏ ଦେବଭୋଗ୍ୟ ପଦାର୍ଥ । ତାକୁ ବନ୍ଦ କରିବାକୁ ତମେ ଛାର ମଣିଷ ହୋଇ ଦୁଃସାହସ କରୁଛ ? କମ୍ ତ ସାହସ ନୁହେଁ ? ଯାହା ଦେଖାଯାଉଛି ଏ ପୃଥ୍ୱୀ ଧ୍ୱଂସ ହୋଇଯିବ । କି' ଯେ କଳିକାଳ ଆସି ପହଞ୍ଚିଲା ? ଚାଲ ଭାଇ, ଏଠୁ ପଳେଇଚାଲ । ଏଗୁଡାକ ଶୁଣି ଶୁଣି କାନକୁ ଆଉ ଅପବିତ୍ର କରିବାନି ।" କିନ୍ତୁ ଅନ୍ୟଜଣେ ପୂଜକ ତାକୁ ବୁଝେଇବାକୁ ଚେଷ୍ଟା କରୁଥିଲେ ଭିନ୍ନ ମତ ପୋଷଣ କରି । " ହଇହେ, ତୁମେ ଏଠି ଖିଙ୍କାରୀ - ମିଙ୍କାରୀ ହେଲେ ଲାଭ କ'ଣ ହେବ । ସେମାନଙ୍କର ଗୋଟାଏ ଦଳ ବାହାରିଲାଣି ଏସବୁ ବିରୁଦ୍ଧରେ । ଦେଖୁଛତ, ଏଠି ପ୍ରାୟ ସବୁଲୋକ ତାଙ୍କ କଥାରେ "ହଁ" ମାରିଲେଣି । ଲୋକେ ଆସ୍ତେ ଆସ୍ତେ ବୁଝିଲେଣି ହେ । ଆଉ କେତେଦିନ ଭଣ୍ଡେଇବା, ଭୂଆଁ ବୁଲାଇବା 'ଓଁ ସ୍ୱାହା ସ୍ୱାହା' କରି ? ଲୋକଙ୍କ ଅନ୍ଧବିଶ୍ୱାସର ନିଦ ଆସ୍ତେ ଆସ୍ତେ ଭାଙ୍ଗିଗଲାଣି । ଯାହା ଥିଲାତ ଥିଲା, ଏ ବଦମାସ୍ ଦଳ ଯେଉଁ ଘଣ୍ଟପିଟା ନୀତି ଆରମ୍ଭ କଲେଣି, ଏଥିରୁ ଆଉ ତ୍ରାହି ନାହିଁ । ମତେ କିଛି ଆଉ ଭଲ ଦିଶୁନି । ଦେବୀଙ୍କ ପାଖରେ ଯଦି ବଳି ନପଡିବ, ଲୋକଙ୍କର ଦେବୀଙ୍କ ଐଶ୍ୱରିକ ଶକ୍ତି ଉପରେ ଆସ୍ଥା ତୁଟିଯିବ । ଦେବୀ ପୀଠରେ ଗହଳ ଚହଳ ମଧ୍ୟ କମିଯିବ । ଏ ମହଙ୍ଗା ଯୁଗରେ ମଣିଷ ଚଳିବ କେମିତି ? ଯାର ଗୋଟାଏ ପ୍ରତିକାର ନିହାତି ଦରକାର । ଏ ସମିତିର ଅପପ୍ରଚାରକୁ ବିରୋଧ କରିବା ଦରକାର । ଯା ବିରୁଦ୍ଧରେ ଆମକୁ ମଧ୍ୟ ଜନମତ ସଂଗ୍ରହ କରିବାକୁ ହେବ । ଦରକାର ହେଲେ ବନ୍ଦ ପାଳନ କରାଯିବ । ଆସନ୍ତାକାଲି

ଦେବୀପୀଠରେ ପଣ୍ଡିତ ମହାସଭା ଡାକିବାକୁ ସେକ୍ରେଟାରୀଙ୍କୁ କୁହାଯାଉ ଏବଂ ସମ୍ବାଦିକ ସମ୍ମିଳନୀ କରାଯାଇ ବଳୀପ୍ରଥା ସପକ୍ଷରେ ବିସ୍ତୃତ ଭାବରେ ଖବର କାଗଜରେ ଛପାଯାଉ ।

ଶୁକୁଟା ଖୁବ୍ ଜୋରରେ ହସି ହସି ତାଳି ପିଟିବାକୁ ଆରମ୍ଭ କରିଦେଲା । କିଛି ଲୋକ ପଛକୁ ଫେରି ଚାହିଁଲେ । ଶୁକୁଟାର ତାଳିପିଟା ହାତ ଦି'ଟା ଆପେ ଆପେ ସ୍ଥିର ହୋଇଗଲା । ହସଟା ମଧ୍ୟ ଫିକା ପଡି ପାଣି ଫାଟିଗଲା । ଅନ୍ୟମାନେ ସିନା ବୁଝିଲେନି ଶୁକୁଟା ହସ ଆଉ ତାଳିର ମହତ୍ତ୍ୱ, ହେଲେ ପୂଜକ ଦ୍ୱୟ କ'ଣ ବୁଝିଲେ କେଜାଣି ଚୁପ୍‌ଚାପ୍ ପଛମୁହାଁ ହୋଇ ଚାଲିବାକୁ ଲାଗିଲେ ତରବରରେ । ଶୁକୁଟା ଇତଃସ୍ତତ ହୋଇ ଚାରିଆଡକୁ ଚାହିଁଲା ତା' ତରଫରୁ କିଛି ଗୋଟାଏ ଭୁଲ୍‌ଭଟକା ହୋଇଥିବାର ଆଶଙ୍କାରେ । ତା'ର ସରଳ ନିଷ୍କପଟ ମୁହଁଟା କ୍ରମଶଃ ଗମ୍ଭୀର ହୋଇ ଉଠିଲା । ତା'ର ବୋକାମୀଟା ଅନ୍ୟମାନଙ୍କ ନଜର ଜାଲରେ ଛନ୍ଦି ହୋଇଯାଇଛି ଜାଣିପାରି ବିଚରା ଆହୁରି ଲଜ୍ଜିତ ହେବାରେ ଲାଗିଲା । ହେଲେ ପଳେଇ ଯିବାର ରାସ୍ତା ସବୁ ବନ୍ଦ । ତା' ଛଡା ତା'ର ଅସଲ କାମ ଚାଉଳ ଦି' କିଲୋ କିଣିବା । ନ ହେଲେ ପିଲାଛୁଆ ରାତିରେ ନିର୍ଜଳା ଉପବାସରେ ରହିବେ । ଅନନ୍ୟୋପାୟ ହୋଇ ତଳକୁ ମୁହଁପୋତି ଛିଡା ହୋଇ ରହିଲା ଶୁକୁଟା ।

ମନେ ମନେ ଭାଷଣବାଲାଙ୍କ ଉପରେ ଶୁକୁଟା ଭୀଷଣ ଚିଡଚିଡ ହେଉଥାଏ । ଯାଙ୍କରି ପାଇଁ ସିନା ସେ ବିଚ୍ ରାସ୍ତା ଉପରେ ଅପମାନିତ ହେଲା । ତା'ର ସବୁ କାମ ମଧ୍ୟ ବିଳମ୍ବ ହୋଇଗଲା । ଏମାନଙ୍କର ହୁଏତ କିଛି ସ୍ୱାର୍ଥ ଥାଇପାରେ ଏଠାରେ ମିଟିଂ କରିବାରେ, କାରଣ ଏ ଦୁନିଆଟା ତ ମତଲବୀ । ହେଲେ ଏଠାରେ ଏତେ ସମୟ ନଷ୍ଟ କରି ତା'ର ବା ଲାଭ କ'ଣ ହେଲା ? ଏ ମିଟିଂରୁ ସୁଫଳ ମିଳୁ ବା କୁଫଳ ଫଳୁ, ତାକୁ ତ କିଛି ମିଳିଲାନି । ତା'ର ଦରକାର ହାତେ ହାତେ କିଛି ମିଳିଯିବା । ଏ ଶୁଖିଲା ଭାଷଣର ମୂଲ୍ୟ କ'ଣ ? ଏମିତି କେତେ ମଧୁରିଆ ଭାଷଣ ସେ ଶୁଣି ଆସିଛି ଭୋଟ ବେଳେ । କେତେ ଥର ଟ୍ରକ୍ ଡାଲାରେ ବୁହାହୋଇ ଯାଇଛି ଦୂର ଜାଗାକୁ । ଅବଶ୍ୟ ସେତେବେଳେ ଗୋଟାଏ ବଖତ୍ ଭୁରି ଭୋଜନ ଏବଂ ମଜୁରୀଟିଏ ତା'କୁ ମିଳିଯାଉଥିଲା । କିନ୍ତୁ ଏ ଖଡାଖିଆଙ୍କର କରାମତି କ'ଣ ? ଏଠି ତ ପାଣି ଗିଲାସେ ମଧ୍ୟ ମିଳିବାର ନାହିଁ ।

ଶୁକୁଟା ମୁଣ୍ଡ ଉଠାଇ ଉପରକୁ ଚାହିଁଲା । ଶେଷ ବକ୍ତା ଭାଷଣ ଆରମ୍ଭ କଲେ । ସେତେବେଳକୁ ତା'ର ଧୈର୍ଯ୍ୟଚ୍ୟୁତି ଘଟିଲାଣି । ସେଇ ଗୋଟାଏ କଥାକୁ ସମସ୍ତେ କେତେ ଗେଜେର୍ ଗେଜେର୍ ହେଉଛନ୍ତି ? କିଛି ଭଲା ନୂଆ କଥା କହନ୍ତେ । ବର୍ଷରେ କଦବା କେବେ ଗୋଟାଏ ଅଧେ ବୋଦା କି ମଇଁଷୀଟାଏ ଦେବୀଙ୍କ ପାଖରେ ହଣା ହେଉଛନ୍ତି ବୋଲି ଯାଙ୍କର ଏତେ ନବରଙ୍ଗ । କିନ୍ତୁ ସବୁଦିନ ଏ ବଜାରରେ ବୁଢା କୁକୁଡା ଠାରୁ ଆରମ୍ଭ କରି ରୋଗା ହଡା ପର୍ଯ୍ୟନ୍ତ ବିଚ୍ ରାସ୍ତା କଡରେ ହଉ କିମ୍ବା ଲୁଚାଇ ଛପାଇ ହଉ କେତେ ଯେ କେଜାଣି ହଣା ଖାଉଛନ୍ତି , ତା'ର ଠିକଣା କେବଳ ଖାଇବାବାଲାଙ୍କୁ ହିଁ ଜଣା । ତା'ର ସିନା ଅଣ୍ଟାରେ ନୋଟ୍ ବଳନାହିଁ ବୋଲି ସେ କେବେବି ହଣା-କଟା ଜାଗାକୁ ମନ ବଳାଏ ନାହିଁ, ସେ ସବୁକୁ 'ଛି' କରି ଦେଇଛି । କିନ୍ତୁ ସେଇଟା କ'ଣ ତା'ର ଗୋଟାଏ ବଡ ତ୍ୟାଗ

ନୁହେଁ। ଲମ୍ବା ଲମ୍ବା ଭାଷଣ ଝାଡୁଥିବା ଏ କୁହାଳିଆମାନଙ୍କର ସେ ଦିଗରେ କ'ଣ ତ୍ୟାଗ ଅଛି ? ପ୍ରତିଦିନ ନିରୀହ ପଶୁ ପକ୍ଷୀଗୁଡିକ କଂସେଇମାନଙ୍କ ଦ୍ୱାରା ନିୟମିତ ଭାବରେ ହଣା ହେଉଛନ୍ତି । ଏଗୁଡାକ କ'ଣ ଏମାନଙ୍କ ଆଖିକୁ ଦେଖାଯାଉ ନାହିଁ ? କାହିଁ, କେହି ଜଣେହେଲେ ବି ସେ ବିଷୟରେ ପଦେ ହେଲେ ମଧ ପାଟି ଖୋଲିଲେ ନାହିଁ । ଶୁକୁଟାର ତାଳିଟା ସିନା ଅଢାଗାରେ ଅସମୟରେ ବାଜିଗଲା ବୋଲି ସମସ୍ତଙ୍କର ମୁହଁ ଚାହାଁ ଚାହିଁ। ହେଲେ ଖୁବ୍ ଜୋରରେ ହାତ ତାଳି ବାଡେଇ ବକ୍ତାମାନଙ୍କୁ ଉତ୍ସାହିତ କରିଥିବା ବିଜ୍ଞ ପଣ୍ଡିତ ମାନେ କେହିତ ସେ ବିଷୟରେ 'ଉଁ' 'ଚୁଁ' ଶବ୍ଦଟିଏ ମଧ କଲେ ନାହିଁ, ପ୍ରଶ୍ନଟିଏ ମଧ ପଚାରିଲେ ନାହିଁ। ଛାଡ, ଆଜିକାଲି ବକ୍ତା ବି ଯେମିତି ଶ୍ରୋତା ବି ସେମିତି । କ'ଣ ବା ମିଳୁଛି କେଜାଣି ଏ ଫାଲ୍ତୁ ସଭା ଆଉ ବେକାର ଭାଷଣରୁ ?'' ଶୁକୁଟାର ନିଷ୍ପାପ, ନିଷ୍କପଟ ମନଟା ବିକ୍ଷେଇ ଉଠୁଥାଏ ଏ ଜନତାଙ୍କ ଉପରେ । କିନ୍ତୁ ତା' ଭଳି ମୁର୍ଖଟାଏ, ଅକର୍ମାଟାଏ ବା କହିପାରନ୍ତା କ'ଣ ନା କରିପାରନ୍ତା କ'ଣ ?

ଏଥର ସଭା ଭାଙ୍ଗିଲା । ଉପସ୍ଥିତ ଶ୍ରୋତା ଏବଂ ବକ୍ତାମାନେ ନିଜ ନିଜ ଗନ୍ତବ୍ୟ ପଥରେ ଆଗେଇ ଗଲେ। ଦୀର୍ଘ ନିଶ୍ୱାସଟିଏ ଟାଣି ଶୁକୁଟା ମଧ୍ୟ ଆଗେଇଲା ତା' ବାଟରେ । ଗୋଟିଏ ଜବରଦସ୍ତ ଭାଷଣ ଶୁଣା ବନ୍ଧନରୁ ମୁକ୍ତି ପାଇ ସେ ଯେତିକି ଖୁସି ହୋଇଥିଲା, ସ୍ୱାଧିନତା ପରବର୍ତ୍ତି ମଣିଷ ପରାଧୀନତା ବନ୍ଧନରୁ ମୁକ୍ତି ପାଇ ଏତେ ଖୁସି ହୋଇଥିବ କି ନାହିଁ ସନ୍ଦେହ।

କଣ୍ଟ୍ରୋଲ ଦୋକାନରୁ ଦୁଇକିଲୋ ମୋଟା ଉଷୁନା ଚାଉଳ ଖରିଦ୍ କରି ଶୁକୁଟା ଫେରିବାକୁ ଲାଗିଲା ତରବରରେ ତା' ଘର ଅଭିମୁଖେ । ହଠାତ୍ ଗୋଟାଏ କରୁଣ 'ମେଁ' 'ମେଁ' ଶବ୍ଦରେ ସେ ଫେରି ଚାହିଁଲା ରାସ୍ତାକଡକୁ । ମ୍ୟୁନିସିପାଲିଟି ନର୍ଦ୍ଦମା କଡରେ ବରଡା ଟାଟି ତଳେ ଖୋଲିଛି ମାଂସ ଦୋକାନ । ଭିଡ ବି ବେଶ୍ ଜମିଛି । ବୋଧ ହୁଏ ଅଳ୍ପ ସମୟ ପୂର୍ବରୁ ଭାଷଣ ଶୁଣୁଥିବା ଶ୍ରୋତାମାନଙ୍କର ରାତ୍ରି ଭୋଜନ ପାଇଁ ଘରବାହୁଡା ସଉଦା କରିବାର ଶେଷ ଦୋକାନ । ନର୍ଦ୍ଦମା କଡରେ ଚିତ୍କରି ପକାଯାଇଛି ଗୋଟାଏ ବୁଢୀ ଛେଳିକୁ । ତା'ର ଚାରୋଟିଯାକ ଗୋଡକୁ ଏକାଠି କରି ଉପରକୁ ଟେକି ଧରିଥାଏ ଲୁଙ୍ଗିପିନ୍ଧା ଲୋକଟିଏ। ଛେଳିଟି ଅତି କରୁଣଭାବରେ ମେଁ ମେଁ ଚିତ୍କାର କରୁଥାଏ । ମାଂସ ଦୋକାନୀ ଗୋଟାଏ ତୀକ୍ଷ୍ଣଛୁରୀରେ ତା' ବେକକୁ କଚ୍ କଚ୍ କରି ନିର୍ଦ୍ଦୟଭାବରେ କାଟୁଥାଏ । ଶୁକୁଟାର ନିରୀହ ଆଖି ଦି'ଟା ଆପେ ଆପେ ଚିପିହୋଇ ବନ୍ଦ ହୋଇଗଲା । ସେ ଆଖି ଖୋଲିଲାବେଳକୁ ମୁଣ୍ଡ କଟା ହୋଇଥିବା ଛେଳିଟାର ନିର୍ଜୀବ ଦେହଟା ଝୁଲୁଥିଲା ମାଂସ ଦୋକାନର ବାଉଁଶ ଖୁଣ୍ଟରେ । ଶୁକୁଟା ବୋଧହୁଏ ଛେଳି ହଣାର ପ୍ରଥମ ଦୃଶ୍ୟ ସେଇ ଦିନ ହିଁ ଦେଖିଥିଲା । ଆଗରୁ କେବେ ଦେଖିବାର ହୁଏତ ଆଗ୍ରହ ନ ଥିଲା - ଆବଶ୍ୟକତା ବି ନଥିଲା । ନିଷ୍ଠୁର ମାଂସ ଦୋକାନୀ ଉପରେ ସେ ରକ୍ତ ଚାଉଳ ଚୋବାଇ ହେଉଥିଲା । ସତରେ କି ନିର୍ଦ୍ଦୟ ଏମାନେ । ଜୀଅନ୍ତା ପ୍ରାଣୀଟାକୁ କି ନିଷ୍ଠୁର ଭାବରେ ମାରି ପାରୁଛନ୍ତି ?

ଆଉ ଏ ମାଂସ ଲୋଭୀ ଲୋକ ଗୁଡାକ ବି ଆଗ୍ରହ ସହିତ ସେ ଦୃଶ୍ୟକୁ ଉପଭୋଗ କରୁଛନ୍ତି ? ଆଖି ସାମ୍ନାରେ ହଣା ଯାଉଥିବା ପ୍ରାଣୀଟିର ମାଂସକୁ ଏମାନେ ଖାଇପାରୁଛନ୍ତି କେମିତି ? ଏମାନେ କ'ଣ ମଣିଷ ନୁହନ୍ତି, ରାକ୍ଷସ ? ମଣିଷର ମନୋବୃତ୍ତି ଯେଉଁଭଳି ଅବସ୍ଥାରେ ପହଞ୍ଚିଲାଣି ସେ ମଣିଷ ମାଂସ ଖାଇବାକୁ ଆଉ କେତେ ଦିନ ବା ବାକି ? ଏ କ୍ଷୁଦ୍ର ପଶୁ ଜଗତ ଏ ରାକ୍ଷସ ମଣିଷକୁ ଆଉ କେତେ କାଳ ବା ମାଂସ ଯୋଗାଇ ପାରିବ ? ଶୁକୁଟା ଆଉ ଆଗକୁ ଚିନ୍ତା କରି ପାରିଲାନି ।

ଠିକ୍ ସେତିକିବେଳେ ଜଣେ ଧୋତି ପଞ୍ଜାବୀ ପିନ୍ଧା ବୟସ୍କ ଭଦ୍ର ବ୍ୟକ୍ତି ମାଂସ ଦୋକାନର ଟାଟି ତଳକୁ ହସହସ ବଦନରେ ପଶିଲେ । ଉପସ୍ଥିତ କିଛି ଲୋକ ତାଙ୍କୁ ନମସ୍କାର କରି ଆନ୍ତରିକ ସମ୍ମାନ ଜଣାଇଲେ । ମାଂସ ଦୋକାନୀ ମଧ୍ୟ ସଲାମ୍ ବଜାଇ ପଚାରିଲା, " ବାବୁ କେତେ ଦେବି ?"

"ଗୋଟାଏ କିଲୋ । ଖାଲି ସିହ୍ନା ଆଉ କଲିଜା । କିନ୍ତୁ ଏ ମାଂସ ମୁଁ ନେବି ନାହିଁ । ମୋ ସାମ୍ନାରେ ଖାସି କାଟିବୁ । ସେଇ ନାଲି କଅଁଳିଆ ଖାସିଟା କାଟ୍ ।" ଭଦ୍ରଲୋକ ବାଉଁଶ ଖୁଣ୍ଟରେ ବନ୍ଧା ହୋଇଥିବା ଗୋଟିଏ ହୃଷ୍ଟପୁଷ୍ଟ ଛେଳି ଆଡକୁ ଆଙ୍ଗୁଳି ନିର୍ଦ୍ଦେଶ କଲେ । ତାଙ୍କ ଆଖିରୁ ଜଣାଯାଉ ଥାଏ ସତେ ଯେମିତି ସେ ଛେଳିଟାକୁ ଜୀଅନ୍ତା ଖାଇଯିବେ ।

ଶୁକୁଟା ଲକ୍ଷ୍ୟ କରି ଦେଖିଲା ଇଯେ ହେଉଛନ୍ତି ସେହି ଭଦ୍ରଲୋକ ଯାହାଙ୍କୁ ସେ କିଛି ସମୟ ପୂର୍ବରୁ ବଳି ପ୍ରଥା ବିରୋଧରେ ଅନର୍ଗଳ ଭାଷଣ ଦେଉଥିବାର ଦେଖିଥିଲା ବଜାର ଛକରେ । ଏଥର ଶୁକୁଟାର ଗୋଡ ରକ୍ତ ମୁଣ୍ଡକୁ ଉଠିଗଲା । ଚାଉଳ ବ୍ୟାଗଟିକୁ ରଖିଦେଇ ଦୌଡିଗଲା ସେ ଭଦ୍ରଲୋକ ପାଖକୁ । ତାଙ୍କ ସାମ୍ନାରେ ଛିଡାହୋଇ ପଚାରିଲା, " ତମେବାବୁ ସେ ବଜାର ଛକରେ ଏବେ ବଳି ବିରୁଦ୍ଧରେ ଗଳାଫଟେଇ ଭାଷଣ ଦେଉଥିଲ ନା ?"

ଭଦ୍ରଲୋକ ଶୁକୁଟାର ଗୋଡ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁଗଲେ ରାଗରେ । ତାଙ୍କ ଭଳି ଭଦ୍ରଲୋକଙ୍କୁ ମୁହେଁ ମୁହେଁ ଠୋକ୍‌ର ବୋଧହୁଏ ଆଜି ପର୍ଯ୍ୟନ୍ତ କେହି ଦେଇ ନଥିଲେ , ଦେବାକୁ ସାହସ ମଧ୍ୟ କରି ନ ଥିଲେ ।

'ଥୁ' । ଲଣ୍ଡାଏ ଛେପ ଶୁକୁଟା ମୁହଁରୁ ବାହାରି ଭଦ୍ରଲୋକଙ୍କ ଇସ୍ତ୍ରୀକରା ଧଳା ପଞ୍ଜାବୀ ଉପରେ ପଡିବାର ଉପସ୍ଥିତ ସମସ୍ତେ ଲକ୍ଷ୍ୟ କରୁଥିଲେ । ଭଦ୍ରଲୋକ ଅବାକ୍ ହୋଇ ଚାହିଁ ରହିଥିବାବେଳେ, ଶୁକୁଟା କ୍ଷିପ୍ରଗତିରେ ହଜି ଯାଇଥିଲା ଦଶହରା ବଜାରର ଜନଗହଳି ଭିତରେ ।



# ରାଜଯୋଟକ

ବିଦଗ୍ଧ ଫଗୁଣର ଏକ ଅଳସ ସକାଳ । ଝରାବଉଳର ମହ ମହ ବାସ୍ନାରେ ଉଦ୍ଦିପନାର ଫଲ୍‌ଗୁ । ମଧୁପମାନଙ୍କର ଗୁଣୁଗୁଣୁ ଗୁଞ୍ଜନରେ ଏକ ଅସ୍ପଷ୍ଟ ସ୍ୱର ଲହରୀ ଝଂକୃତ । ବସନ୍ତର ସ୍ୱାକ୍ଷର ନେଇ ମଳୟ ତରଙ୍ଗ ଦେହ ମନକୁ ଉଲ୍ଲସିତ କରିବାରେ ବ୍ୟସ୍ତ । ରଙ୍ଗ ବେରଙ୍ଗର ସୁଗନ୍ଧିତ ଫୁଲଭରା ବିସ୍ତିର୍ଣ୍ଣ ବଗିଚାରେ ବୁଲି ବୁଲି ଫଗୁଣର ଭରା ଯୌର୍ବନକୁ ଅଙ୍ଗେ ଅଙ୍ଗେ ଉପଭୋଗ କରୁଥିଲେ ଇତିହାସ ବିଭାଗର ପ୍ରଫେସର ରଜତ କୁମାର ଦାସ । ମୁଗ୍ଧ ମଧୁର ଥିଲା ସେ ଅନୁଭୂତିର ସମ୍ଭାର । ଅତିକ୍ରାନ୍ତ ବୟସରେ ପଦାର୍ପଣ କରିଥିଲେ ମଧ୍ୟ ଦେହରେ ତାଙ୍କର ଭରି ରହିଥିଲା ପୂର୍ଣ୍ଣ ଯୌବନର ସ୍ପଷ୍ଟ ଛାପ ଏବଂ ମନରେ ଖେଳୁଥିଲା ପରିପୂର୍ଣ୍ଣ ରସିକତାର ଅଫୁରନ୍ତ ଢେଉ । ଦାୟିତ୍ୱ ବୋଧର କଣ୍ଟକିତ ରାସ୍ତାରୁ ଦୂରେଇ ରହି ସୌଖିନ ଦୁନିଆର ନରମ ଗାଲିଚା ଉପରେ ଚାଲି ଚାଲି ଜୀବନଟାକୁ ଖିନ୍ ଭିନ୍ କରି ଉପଭୋଗ କରିବାରେ ପ୍ରଫେସର ଦାସଙ୍କର ବଡ ସଉକ ।

ପରିବାର କହିଲେ ସ୍ତ୍ରୀ ମଞ୍ଜୁଶ୍ରୀ, ଏକମାତ୍ର ପୁତ୍ର ନବୀନ ଏବଂ କନ୍ୟା ଲିଲି ଓ ଡଲି । ନବୀନ ଇଂରାଜୀ ବିଭାଗ ଅଧ୍ୟାପକ । ଡଲି ଦୁଇ ବର୍ଷ ପୂର୍ବରୁ ଏମ୍.ଏ.ପାସ୍ କରି ସାରିଥିଲେ ମଧ୍ୟ କୌଣସି କୂଳର ହୋଇ ପାରିନି । ରୂପରେ ଗୁଣରେ ବାଛିବାକୁ କିଛି ନାହିଁ । ଲିଲି ଶେଷ ବର୍ଷ ବି.ଏ. ଛାତ୍ରୀ । ପାଠ ପଢା ବ୍ୟତୀତ ଦୁନିଆର ଅନ୍ୟ କୌଣସି ଦିଗପ୍ରତି ତାର ଆପର୍ଷଣ ନଥାଏ ।

"ଚା' ନିଅ ।" ଚା' କପ୍‌ଟି ଧରି ପଛରୁ ଡାକିଲେ ମଞ୍ଜୁଶ୍ରୀ ।

"ଦେଖୁଛ ମଞ୍ଜୁ, ବସନ୍ତର ଏ ସକାଳ କେତେ ଉପଭୋଗ୍ୟ ।" ପ୍ରଫେସର ଦାସଙ୍କର ଅନ୍ତଃଚକ୍ଷୁ ବସନ୍ତର ଗାଢ ଅଙ୍ଗବାସ ଭେଦକରି ତା'ର ନଗ୍ନରୂପ ଦର୍ଶନରେ ନିମଜ୍ଜି ଥିଲା ।

"ଦିନକୁ ଦିନ ତମର ବୟସ ବୋଧହୁଏ କମିବାରେ ଲାଗିଛି । ଦେଶ ଦୁନିଆରେ ଅବସ୍ଥା କ'ଣ ହେଲାଣି ଆସି, ଟିକିଏ ବାସ୍ତବ କଥା ଚିନ୍ତାକର ।" ମଞ୍ଜୁଶ୍ରୀ ବିରକ୍ତି ଭାବ ପ୍ରକାଶ କରି ଚେୟାରଟିଏ ଦଖଲ କଲେ ।

" ଆମ ପରିବାରରେ ଏମିତି କି ସମସ୍ୟା ଅଛି ଯେ ତମକୁ ବଳେଇ ଯାଉଛି । ସେଥିପାଇଁ ପୁଣି ମତେ ମୁଣ୍ଡ ଖେଳେଇବାକୁ ପଡିବ । ଆରେ, ଖାଅ, ପିଅ ଫୁର୍ତ୍ତିକର , ବାସ । ଏ ସମୟ, ଏ ବୟସ ଆଉ ଥରେ ଫେରି ଆସିବ ନାହିଁ, ବୁଝିଲ ।" ପ୍ରଫେସର ଦାସ ଆଉ ଗୋଟିଏ ଚେୟାର ଦଖଲ କଲେ ।

" ବାଃ, ତମେ ଖାଲି ଫୁର୍ତ୍ତି କରୁଥାଅ, ଏ ଦୁନିଆ ବରଂ ଗୋଲ୍ଲ ହୋଇଯାଉ । ମୁଁ ଆଉ ଏତେ ହନ୍ତସନ୍ତ ହେଇ ପାରିବିନି ।"

"କ'ଣ, ପ୍ରୋବ୍‌ଲେମ୍ କ'ଣ ?"

" ଡଲିର ବୟସ ଆସି ପଚିଶ ଛୁଇଁଲା । ତା' କଥା ତମର ମନେ ଅଛି ?"

" ଆରେ, ଝିଅ ଯେତେବେଳେ ଅଛି ତା' ପାଇଁ ବର ଗୋଟାଏ ନିଶ୍ଚୟ ଅଛି । ଏଥିପାଇଁ ଏତେ ବ୍ୟସ୍ତ କାହିଁକି ?"

"ମତେ କିନ୍ତୁ ଏ ବରଖୋଜା ଆଉ ଝିଅଦେଖା ଫାର୍ସ ବଡ ଅତିଷ୍ଠ ଲାଗିଲାଣି । ତମର ତ କୌଣସି ବିଷୟରେ ଦାୟିତ୍ୱବୋଧ ନାହିଁ, କି ଆନ୍ତରିକତା ନାହିଁ । ବାହାଘରର ଏ ସିଜିନ୍‌ଟା ଚାଲିଗଲେ ପୁଣି ତେରମାସ ପର୍ଯ୍ୟନ୍ତ ଲଗ୍ନ ନାହିଁ । ତମେ ଟିକିଏ ସିରିୟସ୍‌ଲି ଚିନ୍ତାକର । ନିଜେ ଦୌଡାଦୌଡି ନକେଲ ଏ ଟାଉଟର ମଧ୍ୟସ୍ଥିମାନଙ୍କ ଦ୍ୱାରା କିଛି ହୋଇ ପାରିବନାହିଁ । ଖାଲି ସମୟ ଗଡି ଗଡି ଚାଲିଥିବ ।"

" ଠିକ୍ ଅଛି । ଧରିନିଅ ଅଭିଯାନ ଆଜିଠାରୁ ହିଁ ଆରମ୍ଭ ହେଲା ।" ପ୍ରଫେସର ଦାସଙ୍କ କଥା କହିବାର ଢଙ୍ଗରେ ପରିହାସର ଛଟା ଲକ୍ଷ୍ୟ କରୁଥିଲେ ମଞ୍ଜୁଶ୍ରୀ ।

ଅପରିଚିତ ଲୋକଟିଏ ଗେଟ୍‌ଖୋଲି ଭିତରକୁ ପଶିଲା । ଲୋକଟିର ଚେହେରା, ପରିପାଟି ଏବଂ ଚାଲିଚଳନରୁ ସ୍ପଷ୍ଟ ବୁଝାଯାଉଥାଏ ଯେ ସେ ମଧ୍ୟବିତ୍ତ ପରିବାରର ଅର୍ଦ୍ଧ ଶିକ୍ଷିତ ଲୋକଟିଏ ନିଶ୍ଚୟ ।

" ଆଜ୍ଞା ଦାସବାବୁ ଅଛନ୍ତି ?" ଲୋକଟି ପ୍ରଶ୍ନ କଲା ।

" ହଁ ଅଛନ୍ତି, କ'ଣ ହେଲା ?" ମଞ୍ଜୁଶ୍ରୀଙ୍କୁ ଲୋକଟାର ସମ୍ବୋଧନ ଶୁଣି ଚିଡିଚିଡି ଲାଗୁଥାଏ । କେଡେ ଅଭଦ୍ର ଲୋକଟାଏ ସତେ । ପ୍ରଫେସର ଦାସ ବୋଲି ସମ୍ବୋଧନ କରି ଶିଖିନି ।

" ଆଜ୍ଞା, ନମସ୍କାର ।" ଲୋକଟି ପ୍ରଫେସର ଦାସଙ୍କୁ ଅନୁମାନ କରି ଚିହ୍ନି ନେଇଥିଲା ।

ପ୍ରତି ନମସ୍କାର ଜଣେଇଲେ ପ୍ରଫେସର ଦାସ ।

"ମତେ ବିଭୁତି ବାବୁ ଆପଣଙ୍କ ପାଖକୁ ପଠାଇଲେ ।"

" କେଉଁ ବିଭୁତି ବାବୁ ?"

"ଆପଣଙ୍କ ଶଳା ବିଭୁତି ଚୌଧୁରୀ । ସେ ମୋର ଖୁବ୍ ପରିଚିତ ଲୋକ ।"

" ଓଃ, ବିଭୁତି ପଠେଇଛି । କ'ଣ ପାଇଁ ପଠେଇଛି ?" ପ୍ରଫେସର ଦାସଙ୍କ ଉତ୍‌କଣ୍ଠା ବଢିଯାଇଥିଲା ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ବିଭୁତିର ନାମ ଶୁଣି ।

" ଆପଣଙ୍କ ବଡଝିଅ ପାଇଁ ଗୋଟାଏ ବାହାଘର ପ୍ରସ୍ତାବ ଅଛି । ବିଭୁତି ବାବୁ ମତେ ବହୁତ ଦିନରୁ କହିଥିଲେ ଗୋଟିଏ ଭଲ ପ୍ରସ୍ତାବ ବୁଝିବା ପାଇଁ । ବ୍ୟବସାୟ ଜଞ୍ଜାଳ ଭିତରେ ମତେ ବା ବେଳ ମିଳୁଛି କେତେ ଏ ବାହାଘର ଝାମେଲାରେ ମୁଣ୍ଡ ପୁରେଇବାକୁ । ତେବେ ସେ ଯାହା ହେଉ ଗୋଟାଏ ଭଲ ପ୍ରସ୍ତାବ ହଠାତ୍ ପାଇଗଲି । ଭାବିଲି ଅନ୍ତତଃ ଆପଣଙ୍କୁ ଏ ଶୁଭ ପ୍ରସ୍ତାବଟା ଜଣେଇ ଦେଇଯିବା ଉଚିତ୍ ।"

"ଆଚ୍ଛା ଆଚ୍ଛା, ବସନ୍ତୁ । ଦେଖୁଛ ମଞ୍ଜୁ, ଏ ସକାଳର ମାହାତ୍ମ୍ୟ କେତେ ?

ବିଭୂତି ପଠେଇଛି ଯେତେବେଳେ ଧରିନିଅ ତମ କାମ ପକ୍କା ହୋଇଗଲା ।'' ପ୍ରଫେସର ଦାସ ଉତ୍‌ଫୁଲ୍ଲିତ ହୋଇ ଉଠୁଥିଲେ ।

'' ପ୍ରସ୍ତାବଟା କ'ଣ କେମିତି ଟିକିଏ ଶୁଣାନ୍ତୁ ।'' ମଞ୍ଜୁଶ୍ରୀ ସନ୍ଦେହ ଭିତରେ ପ୍ରଶ୍ନକଲେ । ସେ ନିଶ୍ଚିତ ଥିଲେ ଯେ ଏ ଲୋକଟା ଦ୍ୱାରା ଯେଉଁ ପ୍ରସ୍ତାବ ଆସିଛି, ତାହା ଖୁବ୍ ଗୋଟାଏ ଭଲ ପ୍ରସ୍ତାବ କେବେ ହୋଇନଥିବ ।

'' ଖୁବ୍ ସୁନ୍ଦର ପ୍ରସ୍ତାବ ଆଜ୍ଞା । ପିଲାଟି ମେକାନିକାଲ୍ ଇଂଜିନିୟର । ଏଇ ଦୁଇବର୍ଷ ହେଲା ଟାଟା କମ୍ପାନୀରେ ଚାକିରୀ କରିଛି । ଗୋରା ତକ୍ ତକ୍ ଚେହେରା । ଦେଖିବାକୁ କନ୍ଦର୍ପ ପରି । ବାପ ଯେମିତି ଥିଲା ପୁଅ ସେମିତି । ଥିଲାବାଲା ବୁନିୟାଦ୍ ଘର । ପରିବାରରେ ପିଲାଟି ଏକମାତ୍ର ପୁଅ । ପରିବାର କହିଲେ ଦୁଇଜଣ । ବାପା ତା'ର ଡେପୁଟି ସେକ୍ରେଟାରୀ ଥିଲେ ଭୁବନେଶ୍ୱରରେ । ରାୟ ବାହାଦୂର ରାମଶଙ୍କର ପଟ୍ଟନାୟକଙ୍କ ନାଁ ଶୁଣିଥିବେ । ଖୁବ୍ ନାମକରା ଅଫିସର ଥିଲେ । କିନ୍ତୁ ବିଚରା ଆକ୍‌ସିଡେଣ୍ଟରେ ଚାଲିଗଲେ । ଗାଁରେ ତାଙ୍କର ବିରାଟ କୋଠାଘର । ପ୍ରାୟ କୋଡ଼ିଏ ଏକର ସମ୍ପତ୍ତି । ଖାନ୍‌ଦାନ୍ ବୁନିୟାଦ ଘର । ତାଙ୍କ ଘର ସହିତ ମୋର ମଧ୍ୟ ଭଲ ଜଣାଶୁଣା । ବାହାଘରଟା ଯଦି ହୋଇଯାଏନା, ଝିଅଟି ଆପଣଙ୍କର ରାଜରାଣୀ ହୋଇ ରହିବ ।''

'' ତା' ହେଲେ ବର୍ତ୍ତମାନ ପିଲାର ଗାଡିଆନ୍ କିଏ ? କିଏ ବାହାଘର ଖବର ବୁଝି ସୁଝି କରିବ ?'' ମଞ୍ଜୁଶ୍ରୀ ପ୍ରସ୍ତାବଟାକୁ ଖୁବ ଆଗ୍ରହରେ ଗ୍ରହଣ କରିପାରୁ ନଥାନ୍ତି ।

'' ପିଲାର ମାମୁଁ ତା'ର ଗାଡିଆନ୍ । ସେ ବି ଜଣେ ଖୁବ୍ ବଡଲୋକ । ତାଙ୍କର ବାଲେଶ୍ୱରରେ ବିରାଟ ଘର । ଗୋଟାଏ କାରଖାନା ମଧ୍ୟ ବାଲେଶ୍ୱରରେ ଅଛି । ଖୁବ୍ ସୁନ୍ଦର ମେଳାପି ଲୋକ ଆଜ୍ଞା । ଅପାଣମାନଙ୍କ ମିଜାଜ୍ ସାଙ୍ଗକୁ ତାଙ୍କ ମିଜାଜ୍ ଖୁବ୍ ମିଶିବ । ତାଙ୍କ ସହିତ ମୋର ବେଶ ଚିହ୍ନା ଜଣା । ତାଙ୍କରି ଠାରୁତ ଖବରଟା ପାଇଲି । ସେମାନେ ସୁନ୍ଦର ପାଠ ପଢୁଆ ଝିଅଟିଏ ଖୋଜୁଛନ୍ତି । ଏଇ ମାସ ବାହାଘର କରିବାକୁ ସେମାନେ ବ୍ୟସ୍ତ । ତା' ଛଡା ପିଲାଟି ମଧ୍ୟ ଏବେ ଘରକୁ ଆସିଛି ଝିଅ ଦେଖାଦେଖି କରିବାକୁ ।''

''ହୁଁ । ଆଉ ଅନ୍ୟାନ୍ୟ କିଛି କଣ୍ଡିସନ୍ ଅଛି ? '' ମଞ୍ଜୁଶ୍ରୀ ଗମ୍ଭୀର ହୋଇ ଉଠୁଥିଲେ ।

''ଦେବା ନେବାର ତ ପ୍ରଶ୍ନ କଛି ଉଠିବ ନାହିଁ । ତାଙ୍କର କ'ଣ ଅଭାବ ଅଛି ଯେ ? କେବଳ ଜାତକଟା ପଡିବ ଆଉ ଝିଅଟି ପସନ୍ଦ ହେବା ଦରକାର । ବିଭୂତି ବାବୁଙ୍କ ଠାରୁ ଯାହା ଶୁଣିଛି, ଝିଅ ତାଙ୍କର ନିଶ୍ଚୟ ପସନ୍ଦ ହେବ । ଆଉ ରହିଲା ଜାତକ । ପୁଅ ଟିପଣାଟା ମୁଁ ସାଙ୍ଗରେ ଧରି ଆସିଛି । ଝିଅର ଟିପଣାଟା ମତେ ଦିଅନ୍ତୁ । ମୁଁ ଜାତକ ଦେଖି ଜାଣିଛି । ସାଙ୍ଗେ ସାଙ୍ଗେ କାମଟା ଛିଡିଯିବ ।'' ଲୋକଟି ପକେଟରେ ରଖିଥିବା ଗୋଛାଏ କାଗଜ ଖେଳେଇବାରେ ଲାଗିଲା ।

କିଛି ସମୟପରେ ମଞ୍ଜୁଶ୍ରୀ ଝିଅର ଟିପଣାଟି ଏବଂ ଚା' କପ୍‌ଟିଏ ଲୋକଟିର ହାତକୁ ବଢାଇ ଦେଲେ । ସକାଳୁ ସକାଳୁ ଗରମ ଚା' କପ୍‌ଟିକୁ ଲୋକଟି ଆନନ୍ଦରେ ଶେଷ କରିବା

ସଙ୍ଗେ ସଙ୍ଗେ ମନେ ମନେ ଗୁଣୁ ଗୁଣୁ କରି ଏବଂ ଆଙ୍ଗୁଠିରେ ଗଣାଗଣି କରି ଖୁବ୍ ଖୁସିରେ ହସିଦେଲା ।

" ଆଜ୍ଞା, ରାଜଯୋଟକ । ଜାତକଟା ଖୁବ୍ ସୁନ୍ଦର ମେଳ ଖାଉଛି ।"

"ଦେଖୁଛ ମଞ୍ଜୁ, ଫଗୁଣ ସକଳର କରାମତି । ସବୁ କାମ କେମିତି ଫଟାଫଟ୍ ହୋଇ ଯାଉଛି ।" ପ୍ରଫେସର ଦାସ ଖୁବ୍ ଖୁସି ହେଉଥିଲେ ।

" ତା' ହେଲେ ଆପଣ ଯାଇ ସେଠାରେ ପ୍ରସ୍ତାବ ଦିଅନ୍ତୁ । ଆମ ତରଫରୁ ପ୍ରଥମେ ଯାଇ ଦେଖା ଦେଖି କରିଆସିଲେ, ତା'ପରେ ସେମାନେ ଆସବେ ଝିଅ ଦେଖିବାକୁ ।" ମଞ୍ଜୁଶ୍ରୀ କୌଣସି ଆଗ୍ରହ ନଦେଖାଇ ମନ୍ତବ୍ୟ ଦେଲେ ।

" ଶୁଭ କାମରେ ବିଳମ୍ବ ଅସହ୍ୟ । ଆଜିଭଳି ଶୁଭ ଦିନଟାକୁ ହାତଛଡା କରାଯିବନି । ଆଜି କାମ ଆଜି ହିଁ ହେବ । ମୁଁ କହିଥିଲିନା ଅଭିଯାନ ଆଜିଠାରୁ ଆରମ୍ଭ ହବ । ଆଜି ରବିବାର । ଆଜି ମୋର ମଧ୍ୟ ସମୟ ଅଛି । ଏଣୁ ତାଙ୍କ ଘରକୁ ଆଜି ଯିବା ଉଚିତ୍ ।" ପ୍ରଫେସର ଦାସ ଉଠିବା ଉଠିବା ହେଉଥିଲେ ।

" କି ଆଶ୍ଚର୍ଯ୍ୟ; ତାଙ୍କ ଘରକୁ ପ୍ରସ୍ତାବ ଯାଇନି, ଅଥଚ ତମେ ଯାଇ ହଠାତ ପହଞ୍ଚିଯିବ । କ'ଣ ଭାବିବେ ସେମାନେ ?" ମଞ୍ଜୁଶ୍ରୀ ବିରକ୍ତି ପ୍ରକାଶ କଲେ ।

" ଆରେ ଏତେ ଫର୍ମାଲିଟି କ'ଣ ଦରକାର । ସମ୍ପର୍କ ଯେଉଁଠି ହବ, ସେଠି ଏତେଟା ଫର୍ମାଲିଟି ଭଲ କଥା ନୁହେଁ । ନାଁ ଆପଣ କ'ଣ ଭାବୁଛନ୍ତି ?"

" ହଁ ହଁ, ସେଇଟା ଅବଶ୍ୟ ଅସଲ କଥା । ସେମାନେ ମଧ୍ୟ ଏଦିଗରୁ ଖୁବ୍ ଭଲ । ଆପଣ ଆଜିଗଲେ ମଧ୍ୟ କିଛି ଅସୁବିଧା ହେବ ନାହିଁ । ମୋର ତ ସେମାନେ ଅତି ଜଣାଶୁଣା । ମୁଁ କଥାଟା ଚଳେଇ ନେବି ।"

" ନାଁ ନାଁ, ଏମିତି ଯିବାଟା ଆଦୌ ଠିକ୍ ହେବନାହିଁ । ବରଂ ସେ ଭଦ୍ରଲୋକ ସେଠାକୁ ଯାଇ ସେମାନଙ୍କୁ ତୁମ ଯିବା ବିଷୟରେ ଖବର ଦିଅନ୍ତୁ । ତା' ପରେ କିଛି ସମୟ ଛାଡି ତୁମେ ଯାଇ ପହଞ୍ଚପାର ।" ମଞ୍ଜୁଶ୍ରୀ ତାଙ୍କ ନିଷ୍ପତ୍ତି ଶୁଣେଇ ଦେଲେ ।

"ବାଃ, ଏଇଟା ବରଂ ଭଲ ପ୍ରସ୍ତାବ । ମୁଁ ଏବେ ଚାଲି ଯାଉଛି । ବାଲେଶ୍ୱରରେ ପିଲାର ମାମୁଁଙ୍କୁ ଖବର ଦେଇ ପିଲାର ଘରକୁ ଚାଲିଯିବି । ଆପଣ ପ୍ରଥମେ ବାଲେଶ୍ୱରରେ ପିଲାର ମାମୁଁ ବିପ୍ଳବ ରାୟଙ୍କ ଘରେ ପହଞ୍ଚିବେ । ଦିନ ଦୁଇଟା କି ତିନିଟା ସୁଧା ପହଞ୍ଚନ୍ତୁ । ତାଙ୍କର କାର୍ ଅଛି । ସେଇଠୁ ତାଙ୍କ ସାଙ୍ଗରେ ପିଲା ଘରକୁ ଚାଲିଯିବେ । ମୁଁ ପିଲାକୁ ମଧ୍ୟ ଅଟକାଇ ରଖିଥିବି । ବାଲେଶ୍ୱରରୁ ରାମଚନ୍ଦ୍ରପୁର ପ୍ରାୟ ପନ୍ଦର କୋଡିଏ କିଲୋମିଟର ରାସ୍ତା ହେବ । ପିଲାଟିର ନାଁ ଟା ମଧ୍ୟ ଟିପି ରଖନ୍ତୁ । ରମେଶ ପଟ୍ଟନାୟକ । ମୁଁ ତାଙ୍କରି ଘରେ ଆପଣଙ୍କୁ ଅପେକ୍ଷା କରିଥିବି ।"

" ହଁ , ସେଇଆ ହିଁ କରିବା । ବାଲେଶ୍ୱରରେ ମୁଁ ତିନିଟା ପୂର୍ବରୁ ନିଶ୍ଚୟ ପହଞ୍ଚିବାକୁ ଚେଷ୍ଟା କରିବି ।"

" ତା'ହେଲେ ମୁଁ ଆସୁଛି ଆଜ୍ଞା"। ଲୋକଟି ନମସ୍କାର ଜଣାଇ ଗେଟ୍ ଆଡକୁ ମୁହାଁଇଲା । ଗେଟ୍ ପାଖରେ ଦୁଇ ମିନିଟ୍ ଛିଡା ହୋଇ ପୁଣି ଫେରିଲା ।

" ଆଜ୍ଞା କଥା କ'ଣକି, ମୁଁ ଗୋଟାଏ କଥା ଭୂଲି ଯାଇଥିଲି ।"

" କ'ଣ ହେଲା ?" ପ୍ରଫେସର ଦାସ ଦ୍ୱନ୍ଦରେ ପଡିଲେ ।

" ନାଇଁ ,କିଛି ଅସୁବିଧା ନାହିଁ ଯେ । ମୁଁ କିନ୍ତୁ ବର୍ତ୍ତମାନ ବାଲେଶ୍ୱର ଯିବାପାଇଁ ପ୍ରସ୍ତୁତ ହୋଇ ଆସିନଥିଲି । କେମିତି ଯିବି ସେଇ କଥା ଭାବୁଚି । ଯେତେବେଳେ ଯିବାପାଇଁ ମୁଁ କଥା ଦେଇ ସାରିଲିଣି, ନଯିବାକୁ ମଧ୍ୟ ଉପାୟ ନାହିଁ। ଆପଣଙ୍କ କଥା ନରଖିଲେ ବିଭୁତି ବାବୁଙ୍କୁ ମୁହଁ ଦେଖେଇ ପାରିବି ନାହିଁ ? ସେଥିପାଇଁ ଭାବୁଚି, ଯଦି ଅନ୍ତତଃ ଟଙ୍କା ଶହେଟା ଏଁଇଠୁ କୋଉଠୁ ଧାର ମିଳିଯାଆନ୍ତା; ତା'ହେଲେ ସବୁ ସମସ୍ୟାର ସମାଧାନ ହୋଇ ଯାଆନ୍ତା ।"

"ଓଃ , ଇୟେ କ'ଣ ଗୋଟିଏ ସମସ୍ୟା ? ମଞ୍ଜୁ, ଭଦ୍ରଲୋକଙ୍କୁ ଶହେ ଟଙ୍କା ଦିଆଯାଉ ।"

ମଞ୍ଜୁଶ୍ରୀ ନିଜର ଅନିଚ୍ଛା ସତ୍ତ୍ୱେ ଶହେ ଟଙ୍କିଆ ନୋଟଟିଏ ଆଣି ବଢେଇ ଦେଲେ ଲୋକଟି ହାତକୁ । ଲୋକଟି ପୁଣି ନମସ୍କାର କରି ଆଗେଇ ଚାଲିଲା ଗେଟ୍ ଆଡକୁ ।

" ତମେତ ଆଚ୍ଛା ଲୋକ ହେ। ତମେ ଯିବା ପାଇଁ ପ୍ରସ୍ତୁତ ହେଲଣି, ଲୋକଟିକୁ ଶହେ ଟଙ୍କା ଦେଇ ସାରିଲଣି, ଅଥଚ ସେ ଲୋକଟି କିଏ, ତାର ପରିଚୟ କ'ଣ କିଛି ପଚାରିଲ ନାହିଁ ?" ମଞ୍ଜୁଶ୍ରୀ ଚୁପ୍ ଚୁପ୍ କରି ପଚାରିଲେ ।

" ହଁ ହଁ, ନିଶ୍ଚୟ। ମୁଁ ବି ସେକଥା ଭୁଲି ଯାଇଥିଲି । ମୋ ନାଁ କଳାକାର ମହାନ୍ତି । ଘର ସୋରୋ । ସୋରୋ ବଜାରରେ ଯେ କୌଣସି ଲୋକକୁ ପଚାରିଲେ ଆମ ଘର ସେ ଦେଖାଇ ଦେବ ।" ଲୋକଟି ପଛକୁ ଫେରି ତାହିଁ ସଫେଇ ଦେଲା ।

"ଠିକ୍ ଅଛି, ଆପଣ ଯାଆନ୍ତୁ । ମୁଁ ତିନିଟା ପୂର୍ବରୁ ବାଲେଶ୍ୱରରେ ପହଂଚିବି ।"

ଲୋକଟିକୁ ସସମ୍ମାନେ ବିଦାୟ ଦେଇ ପ୍ରଫେସର ଦାସ ତାଙ୍କର ପ୍ରସ୍ତୁତି ପର୍ବ ଆରମ୍ଭ କଲେ । ନିର୍ଦ୍ଧାରିତ ସମୟରେ ତାଙ୍କର ଜଣେ ସହଯୋଗୀ ଅଧ୍ୟାପକଙ୍କୁ ସାଙ୍ଗରେ ଧରି ସ୍କୁଟର ଷ୍ଟାର୍ଟ୍ କଲେ । ମଞ୍ଜୁଶ୍ରୀ ପଛରୁ ଡାକି କହିବାରେ ଲାଗିଥିଲେ, "ଟିକିଏ ଭଲ କରି ଦେଖା ଦେଖିକରି ଆସିବ । ପଛରେ ଯେମିତି କିଛି ଅସୁବିଧା ନବାହାରେ ।"

ସ୍କୁଟର ଯାଇ ବାଲେଶ୍ୱର ଛୁଇଁଲା । ଲୋକଟିର କହିବା ଅନୁସାରେ ଶିଳ୍ପପତି ବିପ୍ଳବ ରାୟଙ୍କ ଘର ଖୋଜି ପାଇବାରେ ଆଦୌ ଅସୁବିଧା ହେଲା ନାହିଁ ପ୍ରଫେସର ଦାସଙ୍କୁ । ଗେଟ୍‌ରେ ନାମ ଫଳକ ଦେଖି ସ୍କୁଟର ବ୍ରେକ୍ କଷିଲେ । ଦ୍ୱିତଳ ବିଶିଷ୍ଟ ବିଶାଳକାୟ ସୁଦୃଶ୍ୟ ଅଟ୍ଟାଳିକା । ସାମ୍ନାରେ ବିସ୍ତିର୍ଣ୍ଣ ଲୋଭନୀୟ ଫୁଲ ବଗିଚାରେ ସଜେଇଲା ଭଳି ବିଭିନ୍ନ ପ୍ରକାର ଫୁଲର ସମ୍ଭାର । ପରିବେଶ ଖୁବ୍ ଆକର୍ଷଣୀୟ । ଗେଟ୍ ଖୋଲି ଦୁହେଁ ଭିତରେ ପଶିଲେ ଏବଂ କଲିଂବେଲ୍‌ର ସୁଇଚ୍ ଟିପି ଅନ୍ତେବାସୀମାନଙ୍କୁ ସେମାନଙ୍କ ଆସିଯିବାର ସୂଚନା ଦେଲେ ।

ପ୍ରଫେସର ଦାସଙ୍କୁ ଭାରି ଅଡୁଆ ଲାଗୁଥାଏ, କେମିତି ଭାବରେ ସେ ବିପ୍ଳବ ରାୟଙ୍କ ସହିତ କଥାଟା ଆରମ୍ଭ କରିବେ ଏବଂ ଗପ ଜମେଇବେ । ମୁଖ୍ୟ ଦରଜା ଖୋଲିଗଲା । ଚାକର ପିଲାଟିଏ ବାହାରକୁ ଆସି ଜିଜ୍ଞାସା କଲା ।

" ମିଷ୍ଟର ରାୟ ଅଛନ୍ତି ?" ପ୍ରଫେସର ଦାସ ପ୍ରଶ୍ନ କଲେ ।

"କ'ଣ କାମ ଅଛି ?" ପିଲାଟି ଜାଣିବାକୁ ଚାହିଁଲା ।

ମିଷ୍ଟର ରାୟଙ୍କୁ କହ ପ୍ରଫେସର ରଜତ ଦାସ ଆସିଗଲେଣି । ଶୀଘ୍ର ବାହାରିବେ । ଚଞ୍ଚଳ କାମ ସାରି ଆମେ ସନ୍ଧ୍ୟା ପୂର୍ବରୁ ଫେରିଯିବୁ ।" ପ୍ରଫେସର ଦାସ ରୁମାଲରେ ମୁହଁ ପୋଛୁଥିଲେ ।

" ବାବୁ ତ ଦଶ ମିନିଟ୍ ହେଲା ଗାଡି ନେଇ ମହାନ୍ତି ବାବୁଙ୍କ ସାଙ୍ଗରେ କୁଆଡ଼େ ବାହାରକୁ ଗଲେ ।"

" ତା' ହେଲେ ସେମାନେ ଚାଲିଗଲେଣି ? ଦେଖିଲେ , ମି. ରାୟ୍ କେତେ ପଙ୍କଚୁଆଲ୍ । ଆମର ଅଧ ଘଣ୍ଟାଏ ଡେରି ହୋଇଗଲା ଅବଶ୍ୟ । ସେମାନେ ଅପେକ୍ଷା କରି କରି ଆଗରେ ଚାଲିଗଲେ । ବର୍ତ୍ତମାନ ଆମେ କ'ଣ କରିବା ?" ପ୍ରଫେସର ଦାସ ଅଧ୍ୟାପକ ବନ୍ଧୁଙ୍କୁ ପ୍ରଶ୍ନ କଲେ ।

" ବାଧ୍ୟ ହୋଇ ସ୍କୁଟରରେ ରାମଚନ୍ଦ୍ରପୁର ପର୍ଯ୍ୟନ୍ତ ଯିବାକୁ ପଡିବ । ଭଦ୍ରଲୋକମାନେ ସେଠାରେ ଆମକୁ ଅପେକ୍ଷା କରିଥିବେ ଯେ ।" ଅଧ୍ୟାପକ ମତବ୍ୟକ୍ତ କଲେ ।

ନିଜର ସାମାନ୍ୟତମ ଭୁଲ ପାଇଁ ମନେ ମନେ ଅନୁତପ୍ତ ହେଉଥିଲେ ପ୍ରଫେସର ଦାସ । ଆଉ ଦଶ ମିନିଟ ଆଗରୁ ଆସି ପହଞ୍ଚି ପାରିଥିଲେ, ଆରାମ୍‌ରେ କାର୍‌ରେ ଯାଇପାରିଥାନ୍ତେ । ବର୍ତ୍ତମାନ ରାମଚନ୍ଦ୍ରପୁର ପର୍ଯ୍ୟନ୍ତ ସ୍କୁଟରରେ ଯିବା ଆସିବା ଯେ କେତେ କଷ୍ଟ ହେବ ସେ କଥା ମନେ ପକାଇ ପ୍ରଫେସର ଦାସ ମନଟାକୁ ଆମ୍ବିଳା କରୁଥାନ୍ତି । ସ୍କୁଟର ଚାଲିଥାଏ ଦ୍ରୁତ ଗତିରେ ଯାନ ପରେ ଯାନ ଅତିକ୍ରମ କରି । ରମଚନ୍ଦ୍ରପୁର ଯେତିକ ପାଖେଇ ଆସୁଥାଏ ପ୍ରଫେସର ଦାସଙ୍କର ଉତ୍‌କଣ୍ଠା ସେତିକି ବଢିବଢି ଚାଲିଥାଏ । ସେ ଅନୁମାନ କରୁଥାନ୍ତି ଗାଁ ମୁଣ୍ଡ ଛକ ପାଖରେ ତାଙ୍କୁ ପାଛୋଟି ନେବାକୁ ଜଳାଧାର ମହାନ୍ତି କିଭଳି ଭାବରେ ଉକ୍ଣ୍ଠାର ସହିତ ପ୍ରତୀକ୍ଷା କରିଥିବ । ପଟ୍ଟନାୟକ ପରିବାରର ବିସ୍ତିର୍ଣ୍ଣ ଦାଣ୍ଡରେ ବିପ୍ଳବ ରାୟଙ୍କ କାରଟି କିପରି ବୀର ଦର୍ପରେ ଛିଡା ହୋଇଥିବ, ସ୍ୱୟଂ ଶିଳ୍ପପତି ବିପ୍ଳବ ରାୟ କିପରି ଅଗଣାରେ ଚେୟାରଟିଏ ଉପରେ ବସିରହି ସେମାନଙ୍କର ଆସିବା ବାଟକୁ ଚାହିଁ ରହିଥିବେ ଏବଂ ବାରମ୍ବାର ହାତ ଘଣ୍ଟାକୁ ଚାହିଁ ବ୍ୟସ୍ତ ହେଉଥିବେ, ପଟ୍ଟନାୟକ ପରିବାରର ସ୍ତ୍ରୀ ଲୋକ ମାନେ ବିଭିନ୍ନ ପ୍ରକାର ଆୟୋଜନରେ ବ୍ୟସ୍ତ ଥିବେ ଏବଂ ବର ପାତ୍ରଟି କିପରି ସତର୍କତାର ସହ ବାରମ୍ବାର ଦର୍ପଣରେ ନିଜର କନ୍ଦର୍ପ ସୁନ୍ଦର ଚେହେରାକୁ ଦେଖି ନେଇ ଆତ୍ମସନ୍ତୋଷ ଲାଭ କରୁଥିବ ।

ସ୍କୁଟର ଆସି ରାମଚନ୍ଦ୍ରପୁର ଗାଁ ମାଟି ଛୁଇଁଲା । ଖୁବ୍ ବଡଗାଁ । ପଶ୍ରସ୍ତ ରାସ୍ତା । ସଜେଇଲା ଭଳି ଘର ଗୁଡିକ । ଗାଁଟିର ଆଭିଜାତ୍ୟ ଥିଲାଭଳି ଅନୁଭବ କଲେ ପ୍ରଫେସର

କ୍ଳାସ । ପଛ ସିଟରେ ବସିଥିବା ଅଧ୍ୟାପକ ଜଣଙ୍କ ମନ୍ତବ୍ୟ ଦେଲେ " ଗାଁ ରାସ୍ତାରେ କାର୍ ଚକାର ଚିହ୍ନ ବର୍ଣ୍ଣ କିଛି ଜଣାଯାଉନି ସାର୍ ।"

ଗାଁ ମୁଣ୍ଡ ଛକ ପାଖରେ ସ୍କୁଟର ବ୍ରେକ୍ କଷିଲା । ସ୍କୁଟରରେ ଆସିଥିବା ଭଦ୍ରଲୋକମାନଙ୍କୁ ଦେଖି ସେଠାରେ ଥିବା କେତେଜଣ ଲୁଙ୍ଗିପିନ୍ଧା ଗାଁ ଲୋକ ପାଖକୁ ଆସିଲେ । ପ୍ରଫେସର ଦାସଙ୍କ ଆଖି ଯୋଡାକ ସମାନ୍ତର ଭାବରେ ଘୁରି ଘୁରି ଖୋଜୁଥିଲା କଳାକାର ମହାନ୍ତିକୁ ।

" ଏଠାରେ ଇଞ୍ଜିନିୟର ରମେଶ ପଟ୍ଟନାୟକଙ୍କ ଘରଟା କେଉଁଠି ?" ପ୍ରଫେସର ଦାସ ପ୍ରଶ୍ନ କଲେ ।

" ଇଞ୍ଜିନିୟର ?" ଲୋକମାନେ ପ୍ରତ୍ୟେକ ପ୍ରତ୍ୟେକଙ୍କ ମୁହଁକୁ ଚାହୁଁଥିଲେ ।

"ହଁ, ସ୍ୱର୍ଗତ ରାୟବାହାଦୁର ରାମଶଙ୍କର ପଟ୍ଟନାୟକଙ୍କ ପୁଅ ରମେଶ ପଟ୍ଟନାୟକ ।"

ଲୋକମାନେ ସମସ୍ତେ ନିରବ ।

" ରମେଶ ବାବୁଙ୍କ ମାମୁଁ ଶିଳ୍ପପତି ବିପ୍ଳବ ରାୟ । ତାଙ୍କ ଘର ବାଲେଶ୍ୱରରେ । ସେ ମଧ କାର୍ ନେଇ ଆସିଛନ୍ତି ରମେଶ ବାବୁଙ୍କ ଘରକୁ । ଆମ ଆଗେ ଆଗେ ଅଳ୍ପ ସମୟ ହେବ ଆସିଛନ୍ତି ।" ପ୍ରଫେସର ଦାସ ଅଧିକ ପରିଚୟ ଦେବାକୁ ଚାହୁଁଥିଲେ ।

"କୌଣସି କାର୍ ଏ ଗାଁକୁ ଆଜି ଆସିନାହିଁ । ଆମେ ଦି' ଘଣ୍ଟା ହେବ ଏଇଠି ଅଛୁ" ଜଣେ ଲୋକ ସଫେଇ ଦେଲେ ।

"ତାହେଲେ କାର୍‌ଟା ଗଲା କୁଆଡେ ?" ପ୍ରଫେସର ଦାସ ନିଜକୁ ପ୍ରଶ୍ନ କଲେ ?

" ହଉ, ଠିକ୍ ଅଛି । ରମେଶ ବାବୁଙ୍କ ଘରଟା ଟିକିଏ ଆମକୁ ଦେଖାଇ ଦିଅ ।" ପ୍ରଫେସର ଦାସ ସ୍କୁଟର ଷ୍ଟାର୍ଟ ମାରିବାକୁ ଯାଉଥିଲେ ।

" ଏମିତିକା ଲୋକ ତ ଏ ଗାଁରେ କେହି ନାହାଁନ୍ତି ।" ଆଉଜଣେ ଉତ୍ତର ଦେଲା ।

"ଏଇଟା ରାମଚନ୍ଦ୍ରପୁର ନୁହେଁକି ?" ପ୍ରଫେସର ଦାସ ଆଶ୍ଚର୍ଯ୍ୟରେ ପ୍ରଶ୍ନକଲେ ଏବଂ ଭୂଲରେ ଅନ୍ୟ କେଉଁ ଗାଁରେ ପହଞ୍ଚି ଯାଇଛନ୍ତି ବୋଲି ତାଙ୍କର ଧାରଣା ବଦ୍ଧମୂଳ ହେଲା ।

" ଏଇ ଗାଁ ରାମଚନ୍ଦ୍ରପୁର ଆଜ୍ଞା । କିନ୍ତୁ ଏଠିତ ପଟ୍ଟନାୟକ ଘର ଗୋଟିଏ ବି ନାହିଁ । ଗୋଟେ ନାୟକ ସାହି ଅଛି । ସେଇ ସାହିରେ ରାମଶଙ୍କର ନାୟକ ବୋଲି ଲୋକଟିଏ ଥିଲା । ସେ ଭୁବନେଶ୍ୱରରେ କୋଉ ସେକ୍ରେଟରୀଙ୍କ ପାଖରେ ପିଅନ କାମ କରୁଥିଲା । କିନ୍ତୁ ବିଚରା ଏକ୍‌ସିଡେଣ୍ଟରେ ଚାଲିଗଲା । ତା'ରି ପୁଅ ରମେଶ ନାୟକ । ଟୋକାଟା ଆଜିକାଲି ଟାଟାରେ କୋଉ ଗୋଟେ ଗ୍ୟାରେଜ୍‌ରେ କାମ କରୁଛି । ଏବେ ତ ସେ ଟୋକା ବାହା ହେବାକୁ ଗାଁକୁ ଆସିଛି କେତେ ଦିନ ହବ । ଆପଣ ସେଇ ରମେଶ କଥା ପଚାରୁ

ନାହାଁନ୍ତି ତ ? ତାଙ୍କ ଘର ଏଇ ଆଗରେ, ଅନ୍ତବାଟ । ମୋ ସାଙ୍ଗରେ ଆସନ୍ତୁ । ମୁଁ ତାଙ୍କଘର ଦେଖେଇ ଦେବି । ଖଣ୍ଡିଆ ଚାଳଘର ଖଣ୍ଡେ । ଆପଣଙ୍କ ଭଳିଆ ଭଦ୍ରଲୋକଙ୍କୁ ସେ ବସେଇବ କେଉଁଠି ? '' ବୟସ୍କ ଲୋକଟିଏ ଗପିଚାଲିଥିଲା ।

ପ୍ରଫେସର ଦାସଙ୍କ ମୁଣ୍ଡ ସେତେବେଳକୁ ଚକ୍କର୍ ଖାଉଥିଲା । ସେ ଅନୁଭବ କରୁଥିଲେ ତାଙ୍କ ପାଦତଳର ପୃଥିବୀରେ ପ୍ରଚଣ୍ଡ ଭୂମିକମ୍ପ ଆରମ୍ଭ ହୋଇ ଯାଇଛି । ତଥାପି ସେ ନିଜକୁ ସମ୍ଭାଳି ନେବାକୁ ଚେଷ୍ଟା କରୁଥିଲେ ଏବଂ କେଉଁ ମୁହଁ ନେଇ ମଞ୍ଜୁଶ୍ରୀ ପାଖକୁ ଫେରିଯିବେ, ସେ କଥା ଚିନ୍ତା କରି ତାଙ୍କର ହୃତକମ୍ପ ଆରମ୍ଭ ହୋଇ ଯାଇଥିଲା । ଫେରିବା ଉଦ୍ଦେଶ୍ୟରେ ଗାଡି ବୁଲାଇଲେ ।

ଠିକ୍ ସେତିକି ବେଳେ ଆଉ ଗୋଟିଏ ସିମେଣ୍ଟ ରଙ୍ଗର ବଜାଜ୍ ସ୍କୁଟରେ ଭଦ୍ରଲୋକ ଜଣେ ସେହି ଛକରେ ବ୍ରେକ୍ କଷିଲେ ।

'' ଆଜ୍ଞା, ଏଠି ଇଞ୍ଜିନିୟର ରମେଶ ପଟ୍ଟନାୟକଙ୍କ ଘରଟା କେଉଁଠି ?'' ସ୍କୁଟର ଆରୋହି ପ୍ରଶ୍ନ କଲେ ।

ପ୍ରଫେସର ଦାସ ଲୋକଟିର ମୁଣ୍ଡରୁ ଗୋଡ ପର୍ଯ୍ୟନ୍ତ ଲକ୍ଷ୍ୟ କରିଗଲେ ।

'' ତାଙ୍କ ବାପାଙ୍କ ନାଁ ସ୍ୱର୍ଗତ ରାୟବାହାଦୁର ରାମଶଙ୍କର ପଟ୍ଟନାୟକ ?'' ପ୍ରଫେସର ଦାସ ସ୍ମିତ ହସି ପ୍ରଶ୍ନ କଲେ ।

''ହଁ ।''

'' ଆପଣ ବାହାଘର ପ୍ରସ୍ତାବ ନେଇ ଆସିଛନ୍ତି ?''

'' ଆଜ୍ଞା !''

'' ଆପଣଙ୍କୁ କଳାକର ମହାନ୍ତି ପଠେଇଛି ?''

'' ଆଜ୍ଞା ହଁ ।''

'' ଆପଣ ବାଲେଶ୍ୱରରେ ଶିଳ୍ପପତି ବିପ୍ଳବ ରାୟଙ୍କ ଘର ହୋଇ ଆସିଲେ ? ''

'' ଆଜ୍ଞା ହଁ ।'' ଲୋକଟି ଆଶ୍ଚର୍ଯ୍ୟ ହୋଇ ପ୍ରଫେସର ଦାସଙ୍କ ମୁହଁକୁ ବଲ ବଲ କରି ଚାହିଁ ରହି ଉତ୍ତର ଦେଇ ଚାଲିଥାଏ ।

ପ୍ରଫେସର ଦାସ ହୋ ହୋ ହୋଇ ଖୁବ୍ ଜୋରରେ ହସି ଉଠିଲେ । ସତେ ଯେମିତି ସେ ହସର ଅନ୍ତ ନାହିଁ । ତାଙ୍କ ଜୀବନରେ ଏମିତିଆ ମନଖୋଲା ହସ ସେ କେବେବି ହସି ନଥିଲେ । ସେ ହସ ଭିତରେ ସେ ଭୁଲିଯାଇଥିଲେ ସମସ୍ତ ଦୁଃଖ, କଷ୍ଟ , ଗ୍ଲାନି ଓ ଅନୁତାପ ।



# ମଲା ଗଛର ଛାଇ

ଡାକ୍ତର ମହାନ୍ତିଙ୍କର ମୋହ ଭଙ୍ଗ ହେଲା । ପତ୍ରିକାରୁ ଆଖି ଫେରାଇ ସାମ୍ନାକୁ ଚାହିଁଲେ ସେ । ଚାମ୍ବର ଭିତରେ ତାଙ୍କ ଟେବୁଲ୍ ସାମ୍ନାରେ ଛିଡା ହୋଇଥିବା ଲୋକଟି ଉପରେ ସୂକ୍ଷ୍ମ ଦୃଷ୍ଟି ବୁଲାଇ ଆଣିଲେ । ଲୋକଟିର ଚେହେରା, ପରିପାଟି, ଢଙ୍ଗ ଢାଙ୍ଗ ବଡ ବିଚିତ୍ର । ରୁଗ୍ଣ ସ୍ୱାସ୍ଥ୍ୟ, ଖୋଳା ଆଖି ସହିତ ଭିତରକୁ ପଶି ଯାଇଥିବା ଗାଲ ଦୁଇଟା ତାକୁ ଆହୁରି କଦାକାର କରି ଦେଇଥାଏ ।

" ମୁଁ ଭିତରକୁ ଆସିଯାଇଛି ସାର୍ ।"

" କ'ଣ ହେଲା ?" ସାମାନ୍ୟ ଅନ୍ୟ ମନସ୍କ ହୋଇ ପ୍ରଶ୍ନ କଲେ ଡାକ୍ତର ମହାନ୍ତି ।

"ଆପଣଙ୍କ ଅନୁମତି ନ ନେଇ ଭିତରକୁ ଆସିବାଟା ଭୁଲ୍‌ହୋଇନି ତ ସାର୍ ?" ଲୋକଟା ଓଲଟି ପ୍ରଶ୍ନ କରି ବସିଲା । ଲୋକଟାର ଖାପଛଡା କଥା ଗୁଡାକ ଅଡୁଆ ଲାଗୁଥିଲେ ମଧ ସାମାନ୍ୟ ହସିଦେଲେ ଡାକ୍ତର ମହାନ୍ତି ।

" କିଛି ଭୁଲ୍ ହେଲାକି ସାର୍ ? ମୋ କଥା ବାରରେ ବହୁତ ଲୋକ ଠିକ୍ ଆପଣଙ୍କ ଭଳି ହସନ୍ତି ।"

ଏଥର ଡାକ୍ତର ମହାନ୍ତି ଟିକିଏ ଗମ୍ଭୀର ହୋଇ ସିଧା ବସିଲେ ।

" ମତେ ବସିବାକୁ କହିବେନି ?" ଲୋକଟି ପୁଣି ପ୍ରଶ୍ନ କଲା ।

" ଠିକ୍ ଅଛି, ଆସ । ମୋ ପାଖରେ ବସ ।" ଡା. ମହାନ୍ତି ଚେୟାରଟି ଆଡକୁ ଆଙ୍ଗୁଳି ଦେଖାଇଲେ ।

" ମତେ ଆପଣ ଜଣେ ପେସେଣ୍ଟ ବୋଲି ଧରି ନେଇ ପାରନ୍ତି ।" ଲୋକଟି ବସୁବସୁ କହି ଚାଲିଥାଏ ?

" ଅସୁବିଧା କ'ଣ ହୋଇଛି ?"

" ମୁଁ ଆପଣଙ୍କୁ କିଛି ଫିସ୍ ଦେବି ନାହିଁ । ଦେଇ ପାରିବି ନାହିଁ ବୋଲି ଧରି ନିଅନ୍ତୁ ।" ଲୋକଟିର କଥା ଗୁଡିକ ଅଡୁଆ ଲାଗୁଥିଲେ ବି ଡା. ମହାନ୍ତିଙ୍କୁ କେଜାଣି କାହିଁକି ଆକର୍ଷିତ କରୁଥିଲା ।

" ଠିକ୍ ଅଛି । ମୁଁ ତମ ସର୍ତ୍ତରେ ରାଜି । ଏଥର କୁହ କ'ଣ ଅସୁବିଧା ।"

" ସାର୍, ଦେହଟା ଆଦୌ ଭଲ ରହୁନି, ତା' ସାଙ୍ଗରେ ମନଟା ବି ।"

" କେବେ ଠାରୁ ?"

"ଠିକ୍ ଭାବରେ ମନେ ନାହିଁ, ତେବେ ବହୁତ ବର୍ଷ ହେଲାଣି ।"

" କାମ କ'ଣ କରୁଛ ?"

" ଚାକିରି ଖଣ୍ଡେ ତ କରିଛି । ସ୍ଥାନୀୟ ମହାବିଦ୍ୟାଳୟରେ ମୁଁ ଜଣେ ଅଧ୍ୟାପକ ।"

" ଆପଣ ଜଣେ ଅଧ୍ୟାପକ ?" ଡାକ୍ତର ମହାନ୍ତି ସତେ ଯେମିତି ଚମକି ପଡିଲେ । କଥାଟାକୁ ବିଶ୍ୱାସ ମଧ୍ୟ କରିପାରୁନଥିଲେ । ଜଣେ ଗେଜେଟେଡ୍ ଅଫିସର, ଅଥଚ ଏ ପ୍ରକାର ବେଶଭୂଷା, ଚାଲିଚଳଣ, କଥାବାର୍ତ୍ତା ଏବଂ ବିଶେଷ କରି ମାନସିକ ଅବସ୍ଥା ଏପରି ହୋଇପାରେ ଡା. ମହାନ୍ତି ସେ ସବୁକୁ ଠିକ୍ ଭାବରେ ଗ୍ରହଣ କରି ପାରୁନଥିଲେ ।

ଲୋକଟି ତା' ଜୀବନ ଇତିହାସ ଶୁଣେଇ ଚାଲିଥାଏ । ପରିବାର, କର୍ମକ୍ଷେତ୍ର ଏବଂ ସାମାଜିକ ପରିବେଷ୍ଟନୀ କିଭଳି ଭାବରେ ତାକୁ ଉପେକ୍ଷା କରି ଚାଲିଛି । ସବୁ କ୍ଷେତ୍ରରେ ସେ କିପରି ଶୋଷଣର ସମ୍ମୁଖୀନ ହୋଇଛି ଏବଂ ସମସ୍ତଙ୍କ ପାଖରେ ସେ କିପରି ଉପହାସର ପାତ୍ର ହୋଇଛି , ତା'ର ସମସ୍ତ ବୃତ୍ତାନ୍ତ ଲୋକଟି ଉଦାହରଣ ଦେଇ ଗପି ଚାଲିଥାଏ । ଡା.ମହାନ୍ତି ଜଣେ ଚିକିତ୍ସକର ଭୂମିକା ଛାଡି ଜଣେ ଧୈର୍ଯ୍ୟଶୀଳ ଶ୍ରୋତା ପାଲଟି ଯାଇଥାନ୍ତି ।

" ଗୋଟେ କପ୍ ଚା' ମଗାନ୍ତୁ ସାର୍ ?" ଲୋକଟି ହଠାତ୍ ଗପିବା ବନ୍ଦକରି ପ୍ରଶ୍ନକଲା । ଡା.ମହାନ୍ତି ସେତେବେଳକୁ ଏଭଳି ଭାବରେ ଲୋକଟି ଉପରେ ସହାନୁଭୂତିଶୀଳ ହୋଇ ପଡିଥାନ୍ତି ଯେ ତତ୍‌କ୍ଷଣାତ୍ ଚା' କପ୍‌ଟିଏ ପାଇଁ ଅର୍ଡର ପଠାଇଲେ ଭିତରକୁ ।

" ଗୋଟିଏ ଦିଆସିଲି ମଗାନ୍ତୁ ।"

କ'ଣ କରିବେ ?"

ଡା. ମହାନ୍ତି ଡ୍ର ଭିତରୁ ଦିଆସିଲିଟିଏ ବାହାର କରି ଲୋକଟି ହାତକୁ ବଢାଇ ଦେଲେ । ଲୋକଟି ଛାତି ପକେଟ୍ ଭିତରୁ ଖଣ୍ଡିଏ ଅଧାପିଆ ବିଡି ବାହାର କଲା ଏବଂ ଦିଆସିଲିରୁ ନିଆଁ ଧରାଇ ଠାକରା ଗାଲକୁ ଆହୁରି ଭିତରକୁ ଶୋଷି ବିଡି ଟାଣିବାକୁ ଲାଗିଲା । ଇତି ମଧ୍ୟରେ ଗରମ୍ ଚା' କପ୍‌ଟିଏ ମଧ୍ୟ ଆସିଗଲା । ଲୋକଟି ତରତରରେ ବିଡିପିଆ ଶେଷ କରି ଚା' କପ୍‌ରେ ମୁହଁ ଲଗାଇଲା । ଗରମ ଚା' ତକ ଏକା ନିଶ୍ୱାସରେ ଢକ୍ ଢକ୍ କରି ଏପରି ଭାବରେ ସେ ପିଇଲା, ସତେ ଯେମିତି ବହୁ କାଳର ଅତୃପ୍ତ ଆତ୍ମାଟିଏ ମହାତୃପ୍ତିର ସ୍ୱାଦ ଚାଖୁଛି । ଡା. ମହାନ୍ତି ଅପଲକ ନୟନରେ ଲୋକଟିକୁ ଚାହିଁ ରହିଥାନ୍ତି ।

" ଆଉ କପ୍‌ଟିଏ ମଗାଇବା ?" ଡା.ମହାନ୍ତି ପ୍ରଶ୍ନ କଲେ ।

" ନାଁ ।"

" ଆଉ ବିଡି ପିଇବେ ?"

" ଆପଣ ବି ବିଡି ପିଅନ୍ତି ? " ଆଶ୍ଚର୍ଯ୍ୟରେ ଲୋକଟି ପଚାରିଲା ।

" ନାଁ, ମୁଁ କେବେ କେବେ ସିଗାରେଟ୍ ପିଏ ।"

" ମତେ ଖଣ୍ଡେ ସିଗାରେଟ୍ ଦେବେ ସାର୍ ?". ସତେ ଯେମିତି ଲୋକଟି ପାଟିରୁ ଲାଳ ବୋହି ପଡିବ ।

ଡା. ମହାନ୍ତି ଡ୍ର ଭିତରୁ ସିଗାରେଟ୍ ପ୍ୟାକେଟ୍‌ଟିଏ ବାହର କରି ଲୋକଟି ହାତକୁ ବଢେଇ ଦେଲେ । ଲୋକଟି ସିଗାରେଟ ପ୍ୟାକେଟଟିକୁ ଏପଟ ସେପଟ ବୁଲାଇ ବଢ଼

ଆଗ୍ରହର ସହିତ ଦେଖିଲା । ତା' ଆଖିଗୁଡାକ ଖୁସିରେ ବଡ ହୋଇଯିବାର ଡା. ମହାନ୍ତି ଅନୁଭବ କରୁଥାନ୍ତି ।

"ମୁଁ ପ୍ୟାକେଟ୍‌ଟା ନେଇଯିବି ସାର୍ ?"

"ଠିକ୍ ଅଛି ।" ଡା. ମହାନ୍ତି ହସ ରୋକିବାକୁ ଚେଷ୍ଟା କରୁଥାନ୍ତି ।

"ସାର୍ ଆପଣ ଏ ପୁରା ପ୍ୟାକେଟ୍‌ଟା ମୋତେ ଦେଇ ଦେବେ ?"

"ହଁ, ପୁରା ପ୍ୟାକେଟ୍‌ଟା ।"

"ବିଶ୍ୱାସ କରନ୍ତୁ, ମୋତେ କେହି ଖଣ୍ଡେ ବିଡି ବି ଦିଅନ୍ତି ନାହିଁ । ପାଖରେ ପଇସା ନଥିବା ବେଳେ ଯେବେ ବିଡି ପିଇବାକୁ ମନ ବଳାଏ ଭାରି ଅପଦସ୍ତ ହେବାକୁ ପଡେ ସାର ।"

"ବିଡି ପିଇବା ଭଲ ନୁହେଁ । ଛାଡିଦିଅନ୍ତୁ ।"

"ମୁଁ ବଞ୍ଚିବି କେମିତି ସାର୍ ? ମୋର ଆଉ ତ କିଛି ସାହାରା ନାହିଁ ।"

"ବିଡି ଛାଡି ଦିଅନ୍ତୁ । ଔଷଧପତ୍ର ଖାଆନ୍ତୁ । ଆପଣଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଭଲ ନାହିଁ ।"

ଡା. ମହାନ୍ତି କିଛି ଫିଜିସିଆନ୍ ସାମ୍ପଲ ଔଷଧ ବାହାର କରି ଲୋକଟିକୁ ଖାଇବାର ପଦ୍ଧତି ବୁଝାଇଦେଲେ ।

"ମୋ ପାଖରେ ଔଷଧ ନେବାପାଇଁ ପଇସା ନାହିଁ ସାର୍ ।"

"ଏଥିପାଇଁ ପଇସା ଲାଗିବ ନାହିଁ । ଏଗୁଡିକ ମାଗଣାରେ ଆପଣଙ୍କୁ ଦିଆଗଲା ।"

"ଏତେ ଗୁଡିଏ ଔଷଧ ସତରେ ଆପଣ ମୋତେ ଦେଇଦେବେ ?"

"ହଁ, ଏସବୁ ଆପଣଙ୍କର ।"

"ସାର୍ ଆପଣଙ୍କର ଫିସ୍ ?"

"ଫିସ୍ ପରା ଆପଣ ଦେବେନାହିଁ ବୋଲି ଆଗରୁ କହିଛନ୍ତି ।"

"ଆପଣ ସତରେ ଫିସ୍ ନେବେନାହିଁ ?" ଲୋକଟି ବଲ୍‌ବଲ୍ କରି ଚାହିଁ ରହିଲା ଡା. ମହାନ୍ତି ଅଳ୍ପ ହସି ଲୋକଟିର ପିଠି ଥାପୁଡାଇ ଦେଲେ ।

ଏଥର ଲୋକଟି ଔଷଧ ଗୁଡିକୁ, ସିଗାରେଟ୍ ପ୍ୟାକେଟକୁ ଏବଂ ତା' ସହିତ ଦିଆସିଲିକୁ ମଧ୍ୟ ପକେଟରେ ପୁରାଇ ଯିବାପାଇଁ ବାହାରିଲା । ଡା. ମହାନ୍ତି କାହିଁକି କେଜାଣି ଆକର୍ଷିତ ହୋଇ ଲୋକଟି ପଛରେ ବାରଣ୍ଡା ପର୍ଯ୍ୟନ୍ତ ଚାଲିଆସିଥିଲେ ଏବଂ ବହୁ ସମୟ ପର୍ଯ୍ୟନ୍ତ ଲୋକଟିର ଗତିପଥକୁ ଚାହିଁ ରହି କ'ଣ ସବୁ ଚିନ୍ତା କରି ଚାଲିଥିଲେ ।

ବହୁ ସମୟରେ ଡ. ମହାନ୍ତିଙ୍କର ସେହି ଅଧ୍ୟାପକଙ୍କ କଥା ମନେ ପଡିବା ସଂଗେ ସଂଗେ ତାଙ୍କର ଅସହାୟ ମୁହଁଟି ଆଖି ସାମ୍ନାରେ ଭାସି ଉଠେ । ତାଙ୍କର ଦରଦି ଅନ୍ତରରେ କିଛିଟା ଝଟ୍‌କା ଲାଗେ ।

" ମୁଁ ପୁଣି ଆସିଗଲି ସାର୍ ।"

ଡା. ମହାନ୍ତି ବହିରୁ ମୁହଁ ଫେରାଇ ସାମ୍ନାକୁ ଚାହିଁଲେ ଗୋଟିଏ ପରିଚିତ କଣ୍ଠସ୍ୱର ଶୁଣି । ଦୀର୍ଘ ପ୍ରାୟ ଏକ୍‌ମାସ ପୂର୍ବେ ଏଇ ଚାମ୍ବର ଭିତରେ ସାକ୍ଷାତ ହୋଇଥିବା ସେଇ ଅଧ୍ୟାପକ ଜଣକ ଦୁଇହାତ ଯୋଡି ତାଙ୍କ ଟେବୁଲ ପାଖରେ ଛିଡା ହୋଇଥିଲେ ।

" ଆସନ୍ତୁ , ବସନ୍ତୁ । ବହୁତ ଦିନ ହେଲା ଆପଣଙ୍କ ଦେଖା ନଥିଲା । କେମିତି ଅଛନ୍ତି ?" ସତେ ଯେମିତି ଡା. ମହାନ୍ତି ମନେମନେ ଲୋକଟିକୁ ଖୋଜୁଥିଲେ । କିନ୍ତୁ ଏଭଳି ଗୋଟିଏ ଅର୍ଦ୍ଧପାଗଳ, ଅସହାୟ, ବିକୃତ ମଣିଷଟିଏ ଡା. ମହାନ୍ତିଙ୍କ ମନ ଉପରେ କାହିଁକି କେଜାଣି ଗଭୀର ଭାବରେ ରେଖାପାତ କରିଥିଲା, ସେକଥା କେବଳ ତାଙ୍କୁ ହିଁ ଜଣାଥିଲା ।

" ସାର୍, ବହୁତ ସମୟରେ ଇଚ୍ଛା ହୁଏ ଆପଣଙ୍କ ପାଖକୁ ଆସନ୍ତି, ଘଣ୍ଟା ଘଣ୍ଟା ଧରି ଗପ କରନ୍ତି । ଆଖିରୁ ସବୁ ଯାକ ଲୁହ ନିଗାଡି ଦିଅନ୍ତି ଆପଣଙ୍କ ଟେବୁଲ ତଳେ । କିନ୍ତୁପୁଣି ମନଟା ଦବିଯାଏ । କାଳେ ଆପଣ ବି ମୋତେ ଘୃଣା କରି ବସିବେ ।"

ଲୋକଟିର କଥାବାର୍ତ୍ତାରୁ ଡା. ମହାନ୍ତି ଲକ୍ଷ୍ୟକରୁଥିଲେ ଅଳ୍ପ କେତେଟା ଦିନ ଭିତରେ ଲୋକଟିର ଚାଲିଚଳଣ, ପରିପାଟି ଏବଂ କଥାବାର୍ତ୍ତାର କିଛିଟା ପରିବର୍ତ୍ତନ ହୋଇଛି ।

ସ୍ନେହ କାଙ୍ଗାଳ ମଣିଷଟା ଟିକିଏ ସ୍ନେହ, ଟିକିଏ ମମତା ପାଇଲେ କେମିତି କୋଡ ଆଉଜା ଦିଏ, ତା'ର ସ୍ପଷ୍ଟ ନମୂନା ଏଇ ଲୋକଟା ।

" ନାଇଁ, ନାଇଁ ଆପଣ ଯେବେ ଇଚ୍ଛା କରିବେ ମୋ ପାଖକୁ ଆସିବେ, ବରଂ ମତେ ଖୁସି ଲାଗିବ ।" ଡା. ମହାନ୍ତି ବହି ପଢା ବନ୍ଦ କଲେ ।

" ମୁଁ ଚା' କପେ ପିଇବି ସାର୍ ।"

" ଠିକ୍ ଅଛି, ମଗାଇବା ।" ଡା. ମହାନ୍ତି ଚା' ପାଇଁ ଅର୍ଡର ଦେଲେ ।

"ଚା' କଥା ମନେ ପଡିଗଲେ ମୋର ବିଡି କିମ୍ବା ସିଗାରେଟିଏ ପିଇବାକୁ ଭାରି ଇଚ୍ଛାହୁଏ । ଆଜି ଖଣ୍ଡିଆ ବିଡିଟିଏ ମଧ୍ୟ ପାଖରେ ନାହିଁ । ପାଟିଟା ଆମ୍ବିଲା ଲାଗୁଛି ।" ଲୋକଟି ଜିଭରେ ନିଜର ଓଠ ଚାଟୁଥିଲା ।

" ବିଡି ତ ମିଳିବନି, ବରଂ ସିଗାରେଟ୍ ପିଆଯାଉ ।" ଡା. ମହାନ୍ତି ତତ୍‌କ୍ଷଣାତ୍ ସିଗାରେଟ୍ ପ୍ୟାକେଟ୍ ଟିଏ ଦିଆସିଲି ସହ ବଢାଇ ଦେଲେ । ଲୋକଟି ଠାକରା ଗାଲରେ ଟାଣି ଟାଣି ସିଗାରେଟ୍ ପିଇବାରେ ଲାଗିଲା । ଇତି ମଧ୍ୟରେ ଚା' କପଟି ମଧ୍ୟ ଆସିଗଲା । ପୂର୍ବ ଅଭ୍ୟାସ ଭଳି ଲୋକଟି ଢକ୍ ଢକ୍ କରି କପ୍‌ଟି ଚା' ଶେଷ କରିଦେଲା ଚଟାପଟ୍ । ଅଧାଜଳା ସିଗାରେଟ୍‌ଟିକୁ ଲିଭାଇ ସାମ୍ନା ପକେଟରେ ରଖିଲା, ବୋଧହୁଏ ପୁଣିଥରେ ତା'ର ସଦ୍‌ବ୍ୟବହାର କରିବାପାଇଁ ।

" ଏ ପ୍ୟାକେଟଟା ନେବି ସାର ?"

" ମୁଁ ସେଇଟା ଆପଣଙ୍କ ପାଇଁ ହିଁ ରଖିଛି , ନିଅନ୍ତୁ ।"

" ଘରେ ଆପଣଙ୍କର ଆଉ କିଏ ଅଛନ୍ତି ?" ଡା. ମହାନ୍ତି ପ୍ରଶ୍ନ କଲେ ।

ସ୍ତ୍ରୀ, ଦୁଇପୁଅ ଓ ଦୁଇଝିଅ ଗାଁରେ ରହନ୍ତି । କିନ୍ତୁ ସାର୍, ମତେ ସେମାନେ କେହି ଭଲ ଆଖିରେ ଦେଖନ୍ତି ନାହିଁ । ମାସ ଶେଷରେ ପୁଅ ଆସି ନାଲି ଆଖି ଦେଖାଇ ଦରମା ଟଙ୍କାଯାକ ନେଇଯାଏ । ସାରାଟା ମାସ ଚଳିବା ପାଇଁ ମୋତେ ମାତ୍ର ତିନି ଶହ ଟଙ୍କା ଦେଇ ଯାଏ । ଟଙ୍କା ଶେଷ ହୋଇଗଲେ ଅଧିକାଂଶ ସମୟ ଉପବାସ ରହିବାକୁ ପଡ଼େ । କାହାକୁ ବା ଉଧାର ମାଗିବି ? ମତେ ତ କେହି ଭଲ ପାଆନ୍ତି ନାହିଁ । କଲେଜରେ ମୋତେ ଅଂଗର୍ଲି କହି ଚିଡ଼ାନ୍ତି । ପିଲାମାନେ ଟିଟ୍‌କାରୀ ମାରନ୍ତି । କଲେଜ ବାହାରେ ମଧ କେହି ମୋ ସହିତ ସମ୍ପର୍କ ରଖିବାକୁ ଚାହାଁନ୍ତି ନାହିଁ । ଗାଁକୁ ଗଲେ ସ୍ତ୍ରୀ ପିଲାମାନେ ଚିଡ଼ି ଚିଡ଼ି ହୁଅନ୍ତି ।" ଲୋକଟିର ଆଖି ଛଳ ଛଳ ହୋଇ ଉଠୁଥିଲା ।

ଡାଃ ମହାନ୍ତିଙ୍କ ମନଟା ମଧ ସମବେଦନାରେ ଭରି ଉଠୁଥାଏ । ସେ ଲୋକଟି ବିଷୟରେ ଆକାଶ ପାତାଳ ଚିନ୍ତାକରି ଚାଲିଥାନ୍ତି । ଗୋଟାଏ ସୁସ୍ଥ ମଣିଷକୁ ପାଗଳର ଆଖ୍ୟା ଦେଇ ଏ ସମାଜ ତାକୁ କେମିତି ରୁଗ୍ଣ ମେଣ୍ଢାଟିଏ କରି ଦେଇଛି । ତା'ରି କାନ୍ଧ ଉପରେ ଗୋଡ଼ ରଖି ଉପରକୁ ଉଠିଯିବାପରେ ଏଇ ମଣିଷମାନେ କେମିତି ତା'ର ମଜଭୁତ କାନ୍ଧଟିକୁ ଭାଙ୍ଗି ଦେଇଛନ୍ତି, ତା'ରି ଆଖିରୁ ଜ୍ୟୋତି ଆହରଣ କରି ଏଇ ମଣିଷ କିପରି ଭାବରେ ତାକୁ ଆଖି ଥାଉ ଅନ୍ଧ କରି ଦେଇଛି । ଡାଃ ମହାନ୍ତିଙ୍କ ସଦୟ ମନଟି କ୍ରମେ ଭାରାକ୍ରାନ୍ତ ହୋଇ ଉଠୁଥିଲା ।

"ଆପଣ ଧୈର୍ଯ୍ୟ ଧରନ୍ତୁ । ସବୁ ଆସ୍ତେ ଆସ୍ତେ ଠିକ୍ ହୋଇଯିବ ।" ଦୀର୍ଘ ଶ୍ୱାସଟିଏ ଛାଡ଼ି ଡାଃ ମହାନ୍ତି ଆଶ୍ୱାସନା ଦେବାକୁ ଚେଷ୍ଟା କରୁଥିଲେ ।

"ମୁଁ ଆଜି ଆସୁଛି ସାର୍ । ମଝିରେ ମଝିରେ ଆସି ଆପଣଙ୍କୁ ବିରକ୍ତ କରିବି । ଆପଣ କ'ଣ ସତରେ ମୋ ଉପରେ ରାଗିବେ ?" ଲୋକଟିର ଶିଶୁ ସୁଲଭ କଥା ଡାଃ ମହାନ୍ତିଙ୍କୁ ଖୁବ୍ ସ୍ପର୍ଶ କରୁଥିଲା ।

"ଆପଣ ନିଶ୍ଚୟ ଆସିବେ । ଆପଣ ଆସିଲେ ମୋତେ ଭଲ ଲାଗିବ । ଯେତେବେଳେ ଅସୁବିଧା ଥିବ, ମୋତେ କହିବେ । ସଙ୍କୋଚ କରିବେ ନାହିଁ ।"

"ମୁଁ ଆସିବି ସାର, ଅନ୍ତତ କିଛି ସମୟ ବଞ୍ଚିବାକୁ ତ ସୁଯୋଗ ମିଳିବ ।"

ସିଗାରେଟ୍ ଏବଂ ଦିଆସିଲି ପ୍ୟାକେଟ୍‌କୁ ପକେଟରେ ପୁରାଇ ମୁଣ୍ଡ ନୁଆଁଇ ନମସ୍କାରଟିଏ ପକାଇ ଲୋକଟି ଯିବାକୁ ଉଦ୍ୟତ ହେଲା । ଡାଃ ମହାନ୍ତି ଲୋକଟିକୁ ଗେଟ୍ ପର୍ଯ୍ୟନ୍ତ ବଳେଇ ଦେବାକୁ ଯାଇଥିଲେ, ସତେ ଯେମିତି ସେ ତାଙ୍କର ଅତି ଅନ୍ତରଙ୍ଗ ।

ସେଦିନ ଥିଲା ଦୀପାବଳୀ ଅମାବାସ୍ୟାର ଏକ ଜାକଜମକ ସଂଧ୍ୟା । ଆତସବାଜିର ଚମକପ୍ରଦ ଶବ୍ଦରେ ଅସ୍ଥିର ସହରଟା ଖାଲି ଉଠ୍‌ବସ୍ ହେଉଥାଏ । ଘରେ ଘରେ ଆନନ୍ଦର

ଅଫୁରନ୍ତ ଜୁଆର । ଡା: ମହାନ୍ତି କିନ୍ତୁ ଥିଲେ ଏ ସବୁର ପରିପନ୍ଥୀ । ତାଙ୍କ ଘର ସାମ୍ନାରେ ଜଳୁଥାଏ ପ୍ରଦୀପଟିଏ ପରମ୍ପରାର ମୂକ ସାକ୍ଷୀ ସାଜି । ଏକା ଏକା ଚାମ୍ପିଚ ଭିତରେ ବସି ଗଳ୍ପଟିଏ ଲେଖିବାର ସୁଚିନ୍ତିତ ଯୋଜନା କରୁଥିଲେ ଡା: ମହାନ୍ତି । ହଠାତ୍ ଟେଲିଫୋନଟା ବାଜି ଉଠିଲା ତାଙ୍କ ଯୋଜନାର ଘେରି ବନ୍ଧରେ ଫାଟଟିଏ ସୃଷ୍ଟିକରି । ହସ୍‌ପିଟାଲରୁ ଜରୁରୀ ଡାକରା । ଡା: ମହାନ୍ତି ତତ୍‌କ୍ଷଣାତ୍ ବାହାରି ପଡ଼ିଲେ କାଳ ବିଳମ୍ବ ନ କରି । ଜରୁରୀ ଡାକରା ଦ୍ୱାରା ତାଙ୍କର ଗୁଡ଼ାଏ ବ୍ୟକ୍ତିଗତ ଜରୁରୀ କାମ ଯେ ଭୀଷଣ ଭାବରେ ବାଧାପ୍ରାପ୍ତ ହୁଏ, କିମ୍ବା ଆଦୌ ହୋଇପାରେ ନାହିଁ, ସେଥିପାଇଁ ସମୟେ ସମୟେ ଭୀଷଣ ବିରକ୍ତିକର ଲାଗେ । ତଥାପି ଯେତେ ଶୀଘ୍ର ସମ୍ଭବ ରୋଗୀପାଖରେ ସେ ପହଞ୍ଚିବା ପାଇଁ ବ୍ୟଗ୍ର ।

ସ୍କୁଟର ଚାଲିଥାଏ ହସ୍‌ପିଟାଲ ରୋଡ଼ରେ । ଡା: ମହାନ୍ତି ଚିନ୍ତାଗ୍ରସ୍ତ ଥିଲେ । ଆଜି ଭଳି ଦିନରେ ଆତସବାଜି ଯୋଗୁଁ ଆକସ୍ମିକ ଦୁର୍ଘଟଣା ନିଶ୍ଚିତ ଘଟିଥିବ ଏବଂ ହସ୍ପିଟାଲ ଭିତରେ ବେଶ୍ ଜନ ଗହଳି ହୋଇଥିବ ।

ସ୍କୁଟର ହସପିଟାଲ ଭିତରେ ପଶିଲା । କିନ୍ତୁ ହସ୍ପିଟାଲ ପରିସର ବେଶ୍ ଜନଶୂନ୍ୟ ଥିଲା । ଜରୁରୀ ବିଭାଗ ଗେଟ୍ ନିକଟରେ ଷ୍ଟାଫନର୍ସ ଏବଂ ବେହେରାମାନେ ଅପେକ୍ଷାରତ ।

''କ'ଣ ହେଲା ଦିଦି ?'' ଡା: ମହାନ୍ତି ସ୍କୁଟର ଷ୍ଟାଟ୍ ବନ୍ଦ କରୁ କରୁ ପଚାରିଲେ ।

''ଗୋଟିଏ ଆକ୍ସିଡେଣ୍ଟ କେସ୍ ସାର୍, ଅବସ୍ଥା ଭଲନାହିଁ । ତା' ସାଙ୍ଗରେ କେହି ଜଣେ ହେଲେ ବି ଲୋକ ନାହିଁ । ଜଣେ ରିକ୍‌ସାବାଲା ରାସ୍ତାରୁ ଉଠାଇ ଆଣି ଏଠାରେ ଶୁଆଇ ଦେଇ ଚାଲିଗଲା । '' ଷ୍ଟାଫ୍ ନର୍ସଙ୍କ କଣ୍ଠସ୍ୱରରେ ଦରଦ ଭରି ରହିଥିଲା ।

ଡ: ମହାନ୍ତି କାଳ ବିଳମ୍ବ ନ କରି ଲୋକଟି ପାଖକୁ ଚାଲିଲେ । ଲୋକଟାର ମୁହଁ ଉପରେ ଟର୍ଚ୍ଚ ଆଲୁଅ ବୁଲାଇ ଆଣି ହଠାତ୍ ଚମକି ଉଠିଲେ । ନିଜକୁ କିଛିଟା ସଂଯତ କରି ଲୋକଟିର ନାଡ଼ିର ଗତି ଦେଖିବାକୁ ଲାଗିଲେ । ଡା. ମହାନ୍ତିଙ୍କ ମୁହଁରେ ଆଶଙ୍କାର ଚିହ୍ନ ସ୍ପଷ୍ଟ ହୋଇ ଉଠୁଥାଏ । ସେ ଷ୍ଟେଥୋସ୍କୋପ ନେଇ ଲୋକଟିର ହୃତ୍‌ପିଣ୍ଡର ସ୍ପନ୍ଦନ ଶୁଣିବାକୁ ଲାଗିଲେ । ତାଙ୍କ ମୁଖ ମଣ୍ଡଳରେ ହଠାତ୍ ଆତଙ୍କର ଚିହ୍ନ ଫୁଟିଉଠିଲା । ସେ ଯେମିତି ହତାଶ ହୋଇପଡୁଥିଲେ, ନିରୁପାୟ ହୋଇ ପଡୁଥିଲେ । ପୁଣି ଥରେ ଲୋକଟିର ମୁଖ ମଣ୍ଡଳକୁ ଟର୍ଚ୍ଚ ଆଲୁଅରେ ଭଲ କରି ଦେଖିବାକୁ ଲାଗିଲେ । ସେଇ ମୁହଁ, ସେହି ଖୋଲା ଖୋଲା ଆଖି, ସେହି ଠାକରା ଗାଲ, ସବୁ ଠିକ୍ ଥିଲା । କେବଳ ନ ଥିଲା ପିଣ୍ଡରେ ପ୍ରାଣ । ଡା: ମହାନ୍ତିଙ୍କ ଦୁଇ ଆଖି କୋଣରୁ ଦୁଇଧାର ଲୁହ ବୋହି ଆସିଥିଲା ତାଙ୍କ ଅଜାଣତରେ । ସେ ନିର୍ବାକ୍ ହୋଇ ଚାହିଁ ରହିଥିଲେ ତାଙ୍କର ସେହି ଅତି ଅନ୍ତରଙ୍ଗ ବିଦାୟୀ ବନ୍ଧୁର ନିସ୍ତବ୍ଧ ମୁଖମଣ୍ଡଳକୁ ।



# ଭଙ୍ଗା ବୀଣାର ସ୍ୱର

କଲିକତା ମହାନଗରୀର ପ୍ରଖ୍ୟାତ ଡାକ୍ତରୀ ଶିକ୍ଷା ଅନୁଷ୍ଠାନ କାଲ୍‌କାଟା ମେଡ଼ିକାଲ କଲେଜ ଲୋକାରଣ୍ୟ ହୋଇ ଉଠିଛି । ଆଖ ପାଖରୁ ହଜାର ହଜାର ଲୋକଙ୍କର ସୁଅ ଫିଟିଛି ସେଇ ମେଡ଼ିକାଲ କଲେଜ ହତା ଭିତରକୁ । ସମସ୍ତଙ୍କ ଦୃଷ୍ଟି କେନ୍ଦ୍ରୀଭୂତ ହୋଇଛି ମେଡ଼ିକାଲ କଲେଜ ହତାର ଗୋଟିଏ କୋଣକୁ ଥିବା ତିନି ମହଲା ବିଶିଷ୍ଟ ବିରାଟକାୟ ସୁଦୃଶ୍ୟ ଅଟ୍ଟାଳିକା ଆନାଟମି ଡିପାର୍ଟମେଣ୍ଟ ଉପରେ, ଯେଉଁଠାରେ ପ୍ରଥମ ବାର୍ଷିକ ମେଡ଼ିକାଲ ଛାତ୍ରଛାତ୍ରୀମାନେ ମଲା ମଣିଷର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗକୁ ଖିନ୍ ଭିନ୍ କରି କଟାକଟି କରନ୍ତି ଏବଂ ତା'ର ସୂକ୍ଷ୍ମାତିସୂକ୍ଷ୍ମ ଅଂଶ ବିଷୟରେ ବିଷଦ ଜ୍ଞାନ ଆହରଣ କରି ସଫଳ ଡାକ୍ତର ହୋବା ପାଇଁ ପ୍ରାଥମିକ ଶିକ୍ଷାଲାଭ କରନ୍ତି ।

କୋଳାହଳ ଥମିଯିବା ପରେ ଏକ ପ୍ରକାର ନିସ୍ତବ୍‌ଧତା ବିରାଜମାନ କରିଛି ସେ ଇଲାକାରେ । ଆନାଟମି ବିଭାଗର ଦ୍ୱିତୀୟ ମହଲାରେ ଅବସ୍ଥିତ ପ୍ରକାଣ୍ଡ ଭୂତ କୋଠି ଡିସେକ୍‌ସନ୍ ହଲ, ଯେଉଁ ହଲ ଭିତରେ ମାର୍ବଲ ପଥରରେ ନିର୍ମିତ କୋଡ଼ିଏଟି ଟେବୁଲ ଉପରେ ସଂପୂର୍ଣ୍ଣ ଉଲଗ୍ନ ମଲା ମଣିଷମାନଙ୍କର ସମାହାର ସେଠାରେ ଏକ ନାରକୀୟ ପରିବେଶ ସୃଷ୍ଟି କରିଥାଏ । ହଲ୍‌ର କେନ୍ଦ୍ର ସ୍ଥଳରେ ପ୍ରଖ୍ୟାତ ଆନାଟମି ପ୍ରଫେସର ଡାକ୍ତର ବିମଳେନ୍ଦୁ ଚାଟାର୍ଜିଙ୍କର ରକ୍ତାକ୍ତ ମୃତ ଶରୀର ଚିତ୍‌କାତ୍ ହୋଇ ପଡ଼ି ରହିଥାଏ, ଯାହାକି ସେହି ମୁହୂର୍ତ୍ତ ପାଇଁ ବିଶେଷ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇ ଉଠିଥାଏ । ପ୍ରଫେସର ଚାଟାର୍ଜିଙ୍କ ଭଳି ଜଣେ ଖ୍ୟାତି ସଂପନ୍ନ ଆନାଟମିଷ୍ଟ, ଜଣେ ଛାତ୍ରବତ୍ସଳ ଶିକ୍ଷକ, ଜଣେ ଦେବ ପ୍ରତିମ ମଣିଷକୁ ଡିପାର୍ଟମେଣ୍ଟ ଭିତରେ, ପୁଣି ପ୍ରଚଣ୍ଡ ଦିବାଲୋକରେ ହତ୍ୟା କରାଯାଇପାରେ, ଏକଥାକୁ ସହଜରେ କେହି ଗ୍ରହଣ କରିପାରୁ ନ ଥିଲେ ।

ପୋଲିସ ଇନସପେକ୍ଟର ଶ୍ୟାମଳେନ୍ଦୁ ବାନାର୍ଜି ନାକରେ ରୁମାଲ ଚାପି ଧରି ପୋଲିସ କାଇଦାରେ ଡିସେକ୍‌ସନ ହଲ ଭିତରେ ଗୋଟିଏ ପରେ ଗୋଟିଏ ଟେବୁଲ ଅତିକ୍ରମ କରି ଅତିସତର୍କତାର ସହିତ କ'ଣ ସବୁ ଲକ୍ଷ୍ୟ କରି ଚାଲିଥିଲେ । ସତେ ଯେମିତି ନର୍କପୁରୀ ଭିତରେ ପାପାତ୍ମାମାନଙ୍କର ଗତିବିଧି ଲକ୍ଷ୍ୟ କରି ସେମାନଙ୍କୁ କଏଦୀ ସଜାଇବାର ଯୋଜନା କରୁଥିଲେ । ହଲ୍ ଭିତରେ କିଛି ସମୟ ବୁଲା ବୁଲି କରି ସାରିବା ପରେ ନିକଟରେ ଥିବା କନଷ୍ଟେବଲମାନଙ୍କୁ ପ୍ରଫେସର ଚାଟାର୍ଜିଙ୍କ ଡେଡ୍ ବଡ଼ି ପୋଷ୍ଟମର୍ଟମ ପାଇଁ ନେବାକୁ ନିର୍ଦ୍ଦେଶ ଦେଲେ ।

"ନାଁ ।" ହଠାତ୍ ଜଣେ ଯୁବକ ଚିତ୍କାର କରି ଉଠିଲା । ହଲର ଗୋଟାଏ କୋଣରେ ଛିଡ଼ା ହୋଇଥିବା ପ୍ରଥମ ବାର୍ଷିକ ଡାକ୍ତରୀ ଛାତ୍ର ବିପ୍ଳବ ଚୌଧୁରୀ ଆହତ ନାଗ ଭଳି କମ୍ପୁଥାଏ ।

''ପ୍ରଫେସରର ଡେଡ୍ ବଡ଼ିକୁ ପୋଷ୍ଟମର୍ଟମ୍ କରିବା ପୂର୍ବରୁ ଆଉ ଗୋଟିଏ ଡେଡ୍‌ବଡ଼ିର ପୋଷ୍ଟମର୍ଟମ ହେବା ଦରକାର । ''

''ଏଠାରେ ଆଉ ଗୋଟାଏ ଡେଡ୍‌ବଡ଼ି ଅଛିନା କ'ଣ ?'' ପୋଲିସ୍ ଇନିସ୍‌ପେକ୍ଟର ଆଶ୍ଚର୍ଯ୍ୟରେ ପ୍ରଶ୍ନ କରିଥିଲେ ।

''ହଁ, ଇନିସ୍‌ପେକ୍ଟର । ଆପଣଙ୍କ ସାମ୍‌ନାରେ ଗୋଟିଏ ନୁହେଁ, କୋଡ଼ିଏଟା ଡେଡ୍‌ବଡ଼ି ପଡ଼ି ରହିଛି ଟେବୁଲ ଉପରେ । ସେଇ ଗୁଡ଼ିକ ଭିତରୁ ଗୋଟାଏ । '' ବିପ୍ଳବ କଣ୍ଠରେ ଉତ୍ତେଜନା ଭରି ରହିଥିଲା ।

''ମାନେ ?'' ଇନିସ୍‌ପେକ୍ଟର ଆହୁରି ଆଶ୍ଚର୍ଯ୍ୟ ହେଉ ଥିଲେ ।

ଅନ୍ୟମାନଙ୍କୁ ନିଜ ସାମ୍ନାରୁ ଆଡ଼େଇ ଦେଇ ବିପ୍ଳବ କ୍ଷୀପ୍ର ଗତିରେ ଆଗେଇ ଯାଇଥିଲା ଦଶନମ୍ବର ଟେବୁଲ ପାଖକୁ ଏବଂ ମାର୍ବଲ ପଥରର ଟେବୁଲ ଉପରେ ମୁଣ୍ଡ ପିଟି ଭୋ' ଭୋ' କରି କାନ୍ଦି ଉଠିଥିଲା । ହଲ ଭିତରେ ଥିବା ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ହେଲା ସେଇ ଟେବୁଲ ଉପରେ ।

''ମୁଁ ଆପଣଙ୍କୁ ହାତଯୋଡ଼ି ଅନୁରୋଧ କରୁଛି ଇନିସ୍‌ପେକ୍ଟର, ଦୟାକରି ମୋ କ୍ଲେମ୍ ଉପରେ ଆପଣ ଏହି ଡେଡ୍ ବଡ଼ି ଉପରେ ପୋଷ୍ଟମର୍ଟମ କରନ୍ତୁ । କାରଣ ଏଇଟା ସାଧାରଣ ମୃତ୍ୟୁ ନୁହେଁ ।'' ବିପ୍ଳବ ନିଜକୁ ଯଥେଷ୍ଟ ସଂଯତ କରି ବାଷ୍ପରୁଦ୍ଧ କଣ୍ଠରେ ଅନୁରୋଧ କରୁଥିଲା । ତା'ର ଗଣ୍ଡଦେଶ ଦେଇ ଦୁଇଧାର ଲୁହ ବୋହି ଯାଉଥିଲା ।

''ତା' ମାନେ, ତମେ ଏହାର ମୃତ୍ୟୁ ସମ୍ବନ୍ଧରେ ଜାଣିଛ ?''

''ହଁ ଇନସ୍‌ପେକ୍ଟର, ଏଇ ଶବ ସହିତ ମୋର ଦୀର୍ଘ ଦିନର ଘନିଷ୍ଠ ସମ୍ପର୍କ । '' ଉଲଗ୍ନ ଶବଟି ଆଡ଼କୁ ବିପ୍ଳବ ଆଙ୍ଗୁଳି ନିର୍ଦ୍ଦେଶ କରି କହି ଚାଲିଥାଏ ସିନା କିନ୍ତୁ ଆଡ଼ ଆଖିରେ ମଧ୍ୟ ତା' ଆଡ଼କୁ ଚାହିଁ ପାରୁ ନ ଥାଏ ।

''ଠିକ୍ ଅଛି ! ତମର ଯାହା କିଛି କହିବାର ଅଛି କହିପାର । '' ବିପ୍ଳବର ଆପାଦ ମସ୍ତକ ଲକ୍ଷ୍ୟକରି ଚାଲିଥିଲେ ଇନିସ୍‌ପେକ୍ଟର ।

ଘଟଣାଟି ଅଡୁଆ ମୋଡ଼ ନେଉଥିବାରୁ ଇନିସ୍‌ପେକ୍ଟର ବାନାର୍ଜି ଚିନ୍ତିତ ହେବା ସଂଗେ ସଂଗେ ବିପ୍ଳବ ପ୍ରତି ତାଙ୍କ ମନରେ ସହାନୁଭୂତି କ୍ରମଶଃ ଘନିଭୂତ ହେବାରେ ଲାଗିଥାଏ ।

ନିଜକୁ କିଛିଟା ସଂଯତ କରିନେଇ ପକେଟରୁ ରୁମାଲ ବାହାର କଲା ଓ ନିଜର ଆଖି ନାକକୁ ଥରେ ପୋଛି ନେଇ ଆରମ୍ଭ କଲା ବିପ୍ଳବ ।

''ମୁଁ ବହୁତ ଗରିବ ଘରର ପିଲା ଇନିସ୍‌ପେକ୍ଟର ବାବୁ । ଖାଲି ଗରିବ ନୁହେଁ ହତଭାଗ୍ୟ ମଧ୍ୟ । ପିଲାଦିନରୁ ବାପାଙ୍କୁ ହରେଇ ସାରିଥାଏ । ଘରେ ବୁଢ଼ୀ ମା' କୁସୁମ ଦିଦି ଏବଂ ମୁଁ ବଡ଼ କଷ୍ଟରେ ଚଳୁଥାଉ । ଯାନି ଯୌତୁକ ଦେଇ ନ ପାରିବାରୁ କୁସୁମ ଦିଦିର ବିବାହ ବୟସ ଅତିକ୍ରାନ୍ତ ହେବାକୁ ଲାଗିଲା । ଅନ୍ୟ ଉପାୟ ନ ଦେଖି ମା' ମୋର କୁସୁମ

ଭଳି ଦିଦିକୁ ଶେଷରେ ଟେକି ଦେଲା ଷାଠିଏ ବର୍ଷ ବୟସର ବୁଢ଼ା ହାତରେ ଯାହାର ପ୍ରଥମ ସ୍ତ୍ରୀ ମରିଯାଇଥିଲା ବହୁତ ଦିନ ପୂର୍ବରୁ ଚାରୋଟି ବଡ଼ ବଡ଼ ପିଲାଙ୍କୁ ବୁଢ଼ା ଦାୟିତ୍ୱରେ ଛାଡ଼ି ଦେଇ । କୁସୁମ ଦିଦି ମୁଣ୍ଡରେ ସିନ୍ଦୂର ପିନ୍ଧି ସନ୍ତୋଷଲାଭ କଲା ସତ କିନ୍ତୁ ଅବିଳମ୍ୱେ ପିଲାମାନଙ୍କ ଅସନ୍ତୋଷର ଶିକାର ହେଲା । ବହୁ ଅନ୍ୟାୟ, ଅତ୍ୟାଚାର ସେମାନଙ୍କ ଠାରୁ ସହ୍ୟ କରିବା ପରେ ଚେଷ୍ଟାକଲା ସବୁ ପ୍ରକାର ଅସନ୍ତୋଷରୁ ମୁକ୍ତି ଲାଭ ପାଇଁ ଆତ୍ମହତ୍ୟା କରିବାକୁ ଚେଷ୍ଟା କଲା । କିନ୍ତୁ ପାରିଲା ନାହିଁ । ଡାକ୍ତରମାନଙ୍କ ଅକ୍ଲାନ୍ତ ଚେଷ୍ଟାରୁ ବଞ୍ଚିଯାଇଥିଲା ସେ । ସେହି ଦିନ ଠାରୁ ଡାକ୍ତରମାନଙ୍କ ପ୍ରତି ଗଭୀର ସ୍ନେହ, ଶ୍ରଦ୍ଧା ଓ ସମ୍ମାନରେ ତା' ଅନ୍ତର ପରିପୂର୍ଣ୍ଣ ହୋଇ ଉଠିଥିଲା ।

ଡାକ୍ତରଖାନାରୁ ଫେରିବାପରେ ପୁଣି ସେହି ଅତ୍ୟାଚାର, ସେହି ଯନ୍ତ୍ରଣା । ବୁଢ଼ା କିନ୍ତୁ ସବୁଥିରେ ନୀରବ । ଶେଷର ଅନ୍ୟ ଉପାୟ ନ ଦେଖି ବୁଢ଼ା ପାଖରୁ ଶେଷଥର ପାଇଁ ବିଦାୟ ନେଇ ସେ ଫେରି ଆସିଲା ଆମ ଘରକୁ । କୁସୁମ ଦିଦିକୁ ଫେରିପାଇ ମୁଁ ବହୁତ ଖୁସିହୋଇଥିଲି । ଖେଳିବା, ବୁଲିବା, ଖାଇବା, ସବୁ କାମରେ କୁସୁମ ଦିଦି ମୋର ସାଥି ହୋଇଗଲା ଯଦି ଓ ତା' ମୋ' ଭିତରେ ବୟସର ଯଥେଷ୍ଟ ପାର୍ଥକ୍ୟ ଥାଏ । ହଠାତ୍ ମୋର ଆଦରର ମା' ରୋଗଗ୍ରସ୍ତ ହୋଇ ଶଯ୍ୟାଶାୟୀ ହେଲା । ଆମର ସବୁପ୍ରକାର ଚେଷ୍ଟାସତ୍ତ୍ୱେ ସେ ଆମ୍ଭମାନଙ୍କୁ ଛେଉଣ୍ଡ କରି ତା'ର ବାଟ କାଟିଲା । ତାପରେ ମୋର ସଂପୂର୍ଣ୍ଣ ଦାୟୀତ୍ୱ କୁସୁମ ଦିଦି ଉପରେ ପଡ଼ିଲା । ସେ ହିଁ ଥିଲା ମୋର ବାପ, ମା, ଭାଇ, ଭଉଣୀ, ବନ୍ଧୁ, କୁଟୁମ୍ବ ସବୁକିଛି । ମୁଁ ସେତେବେଳେ ହାଇସ୍କୁଲରେ ପଢୁଥାଏ । ସବୁ ଦୁଃଖ କଷ୍ଟ, ଅଭାବ ଓ ଅସୁବିଧା ଭିତରେ କୁସୁମ ଦିଦିର ମନୋବଳ ଅତୁଟ ଥାଏ । ତା' ପରିବାରର ଏକମାତ୍ର ସନ୍ତାନକୁ ସେ ଗୋଟାଏ ଭଲମଣିଷ କରି ଗଢ଼ିତୋଳିବ ଏ ପ୍ରତିଜ୍ଞା ତା' ମନ ଭିତରେ ଉଙ୍କି ମାରୁଥାଏ । ଭଲ ମଣିଷଟିଏ ହେବାପାଇଁ ଯେତେପ୍ରକାର ସଦ୍‌ଶିକ୍ଷା ଆବଶ୍ୟକ ସେ ପ୍ରତିକ୍ଷଣରେ ମୋତେ ଶିକ୍ଷା ଦେଉଥାଏ । ତା'ର ଗଭୀର ଆନ୍ତରିକ ଇଚ୍ଛାଥାଏ ମୁଁ ଜଣେ ଭଲ ଡାକ୍ତର ହୋଇ ବାହାରେ । କାରଣ ତା' ଆଖିରେ ଡାକ୍ତରମାନେ ଦେବତୁଲ୍ୟ ଏବଂ ରୋଗୀ ସେବା ହିଁ ସର୍ବଶ୍ରେଷ୍ଠ ସେବା । ତା' ସ୍ୱପ୍ନକୁ ସାକାର କରିବା ପାଇଁ ସେ ଏଇ ପ୍ରଫେସର ଚାଟାର୍ଜିଙ୍କ ଘରେ ଚାକରାଣୀ ଭାବରେ କାମ କରିବାକୁ ଆରମ୍ଭ କଲା ମୋତେ ଡାକ୍ତର କରାଇବାକୁ ହେଲେ, ମେଡ଼ିକାଲ କଲେଜର ଜଣେ ପ୍ରଫେସରଙ୍କ ଆଶୀର୍ବାଦ ଯେ ଏକାନ୍ତ ଲୋଡ଼ା, ଏ କଥା ତା' ମୁଣ୍ଡରେ ଭୂତ ହୋଇ ବସା ବାନ୍ଧିଥିଲା ଏବଂ ସେଥିପାଇଁ ଜୀବନର ଯେ କୌଣସି ମୂଲ୍ୟ ଦେବାକୁ ସେ ପ୍ରସ୍ତୁତ ଥିଲା । ଦିଦିର ଆନ୍ତରିକତାକୁ ସମ୍ମାନ ଦେଇ ମୁଁ ମଧ୍ୟ ଆପ୍ରାଣ ଚେଷ୍ଟା କରି ପାଠ ପଢ଼ିଲି । ମାଟ୍ରିକ୍ୟୁଲେସନ୍‌ରେ ପ୍ରଥମ ଶ୍ରେଣୀରେ ମୁଁ ପାସ କରିବା ପରେ ପରୀକ୍ଷା ଫଳ କାଗଜଟା ହାତରେ ଧରି ଯେଉଁ ଦିନ ମୁଁ ଦିଦିକୁ ଦେଖାକଲି, ସେ ମୋତେ ସଂପୂର୍ଣ୍ଣ ଭାବରେ ଜାବୁଡ଼ି ଧରି ଆନନ୍ଦରେ ଅଧିର ହୋଇ ଉଠିଥିଲା ।

ପ୍ରଫେସର ଚାଟାର୍ଜିଙ୍କର ଅଗଣାରେ ଗୋଟିଏ ଅଲଗା ଘରେ ଦିଦି ଏକୁଟିଆ ରହୁଥାଏ । ମୁଁ କେବେ କେବେ ଦିଦି ପାଖରେ ସେଇଠି ରହିଯାଉଥାଏ । ଆରମ୍ଭରୁ ଯେଉଁ ପ୍ରଫେସର ମୋତେ ବୁଢା ଭିକାରୀଠାରୁ ଅଧିକ ଘୃଣା କରୁଥିଲେ, ସେ କ୍ରମେ କ୍ରମେ ମତେ ପାଖକୁ ଡାକିବା, କିଛିଟା ଆଦର କରିବା ଆଦି ଶୁଭ ଲକ୍ଷଣ ମୁଁ ଲକ୍ଷ୍ୟ କଲି । ମୋ ପ୍ରତି ଆକୃଷ୍ଟ ହେବା ପଛରେ ମୋର ଶାନ୍ତ ଶିଷ୍ଟ ଭଦ୍ର ବ୍ୟବହାର କିମ୍ବା ମୋର ଅନ୍ତର୍ନିହିତ ପ୍ରତିଭାର ଅବଦାନ ଥିଲା, ସେ କଥା ସେତେବେଳେ ପ୍ରଫେସର ହିଁ ଜାଣିଥିଲେ । ତେବେ ତାଙ୍କ ଠାରୁ କିଛିଟା ସ୍ନେହ ଆଦର ମୋତେ ସମ୍ମୋହିତ କରିଥିଲା, ଉତ୍ସାହିତ କରିଥିଲା ଏବଂ ଆଉ ପାଦେ ଅଗ୍ରସର ହେବାକୁ ଯଥେଷ୍ଟ ପ୍ରେରଣା ଦେଇଥିଲା । ପ୍ରଫେସରଙ୍କ ସ୍ନେହ ମମତା ମୋ ପ୍ରତି ବଢ଼ିବା ସଂଗେ ଦିଦି ପ୍ରତି ମଧ ସମାନ ଭାବରେ ବଢ଼ିଥିବାର ମୁଁ ଲକ୍ଷ୍ୟ କରୁଥାଏ । ସେତେବେଳେ ପ୍ରଫେସରଙ୍କ ପରିବାର ସହିତ ଦିଦି ନିଜକୁ ଅନ୍ତରଙ୍ଗ ଭାବରେ ସାମିଲ କରିଦେଇଥାଏ । ମୋଟା ମୋଟି ଭାବରେ ସେ ପରିବାରଟିକୁ ଦିଦି ଆପଣାର କରି ନେଇଥାଏ । ମୋ ପାଠ ପଢ଼ା ଏବଂ ଅନ୍ୟାନ୍ୟ ଯାବତୀୟ ଖର୍ଚ୍ଚ ସେତେବେଳକୁ ପ୍ରଫେସର ବହନ କରୁଥାନ୍ତି । ତାଙ୍କ ବଦାନ୍ୟତା ପାଇଁ ତାଙ୍କ ନିକଟରେ ମୋ ମୁଣ୍ଡ ମଧ ନଇଁ ଆସୁଥାଏ । ମୋର ଧାରଣା ହେଉଥାଏ ସେ ହୁଏତ କେଉଁ ଜନ୍ମରେ ମୋର ସମ୍ପର୍କୀୟ ଥିଲେ ନିଶ୍ଚୟ ।

ଥରେ ରାତିରେ ମୁଁ ଦିଦି ପାଖରେ ରହିଯାଇଥାଏ । ଅଧରାତିରେ ହଠାତ୍ କାହିଁକି ନିଦ ଭାଙ୍ଗିଗଲା । ଉଠି ଦେଖେତ ଦିଦି ତା' ବିଛଣାରେ ନାହିଁ । କିଛି ସମୟ ଅପେକ୍ଷା କରିବା ପରେ ମଧ ଦିଦି ନ ଫେରିବାରୁ ମୋର ସନ୍ଦେହ ବଢ଼ିବାକୁ ଲାଗିଲା । ଅଧା ଆଉଜା କବାଟଟି ଖୋଲି ମୁଁ ବାହାରକୁ ଆସିଲି । ଅନତିଦୂରରେ ପ୍ରଫେସରଙ୍କ ବେଡ୍‌ରୁମ ଝାପସା ନୀଳ ଆଲୋକରେ ଆଲୋକିତ । ତା' ଭିତରୁ ଚାପା କଣ୍ଠରେ କିଛି କଥାବାର୍ତ୍ତା ଏବଂ ଯୁକ୍ତି ତର୍କର ଶବ୍ଦ ମୋତେ ସ୍ପଷ୍ଟ ଶୁଣାଗଲା । ମୋ ମନ ଭିତରର ଆଗ୍ରହ ଏବଂ ସନ୍ଦେହ ମୋତେ ଆଉ କେତେ ପାଦ ଆଗେଇ ନେଇ ଉକ୍ତ ବେଡରୁମ୍‌ର ଝରକା ପାଖକୁ ଟାଣି ନେଇଥିଲା ।

''ତୁ ମୋ କଥା ବୁଝିବାକୁ ଚେଷ୍ଟାକର କୁସୁମ । ମୋ ପିଲାମାନେ ବଡ ହୋଇ ଗଲେଣି । ସେମାନେ ମତେ କହିବେ କ'ଣ ? ଏ ସମାଜରେ ମୁଁ ମୁଣ୍ଡ ଟେକି ବାଟ ଚାଲି ପାରିବି ତ ? ଅଧିକ ବିଳମ୍ବ ହୋଇ ଯାଇନି । ଏବେ ବି ହାତରେ ସମୟ ଅଛି । ନର୍ସିହୋମ ଯାଇ ସବୁ ପରିଷ୍କାର କରାଇ ଦେବା । କେହି କିଛି ଜାଣିବାର ସୁଯୋଗ ପାଇବେନି ।''

'' ନାଁ, ମୁଁ କୁଆଡେ ଯାଇ ପାରିବି ନାହିଁ କିମ୍ବା ଗର୍ଭପାତ କରାଇବି ନାହିଁ । ମତେ ବରଂ ଘରୁ ବାହାର କରି ଦିଅନ୍ତୁ । ମୁଁ ଅନ୍ୟତ୍ର କୁଆଡେ ଚାଲିଯିବି । କିନ୍ତୁ ଆପଣଙ୍କ ସନ୍ତାନକୁ ମୁଁ ଜନ୍ମଦେବି ହିଁ ଦେବି । ମୁଁ ଜାଣେ, ଏକଥା ଆପଣଙ୍କୁ ଆଘାତ ଦେବ । ଆପଣ ମଧ ହିଂସ୍ର ହୋଇ ଉଠିବେ ଆପଣଙ୍କ ସମ୍ମାନ ରକ୍ଷାପାଇଁ । ଆପଣଙ୍କର ଯାହା ଇଚ୍ଛା ମୋ ଉପରେ ଅତ୍ୟାଚାର କରନ୍ତୁ, ମୁଁ ସବୁ ସହିବାକୁ ପ୍ରସ୍ତୁତ ଅଛି । କିନ୍ତୁ ମୋ

ଜୀବନର ଏକମାତ୍ର ଲକ୍ଷ୍ୟ ମୋ ଭାଇ ବିପ୍ଳବକୁ ଡାକ୍ତରୀ ପଢ଼ିବା ପାଇଁ ମତେ ଆପଣ ସାହାଯ୍ୟ କରନ୍ତୁ । ଅନ୍ତତଃ ସେତିକି ଦିନ ମତେ ବଞ୍ଚିରହିବାର ସୁଯୋଗ ଦେବେ । ଏତିକି ମୋର ଏକାନ୍ତ ଅନୁରୋଧ । ନହେଲେ ସ୍ୱର୍ଗରେ ମୋ ଆତ୍ମା ଶାନ୍ତି ପାଇବ ନାହିଁ ।'' କୁସୁମର ଦୁଇ ଆଖି କୋଣରୁ ଲୁହଧାର ଝରି ପଡୁଥାଏ ।

ଆଉ କିଛି ଅଧିକ ଶୁଣିବା କିମ୍ବା ଦେଖିବା ମୋ ଧୈର୍ଯ୍ୟର ବାହାର ଥିଲା । କ୍ଷିପ୍ର ଗତିରେ ମୁଁ ବିଛଣାକୁ ଫେରି ଆସି ମୁହଁ ମାଡି ପଡିରହିଲି । ମୋ ଅଶାନ୍ତ ମନର କୋହ, ଲୁହ, ରାଗ, ଅଭିମାନ, ପ୍ରତିଜ୍ଞା ସବୁକିଛି ଏକାକାର ହୋଇଯିବା ପରେ ଏକ ଅସମ୍ଭାଳ ପରିସ୍ଥିତି ସୃଷ୍ଟି କରିବା ଅପେକ୍ଷା ନିଜକୁ ସେ ଯନ୍ତ୍ରଣାରୁ ଦୂରେଇ ରଖିବାର ପ୍ରୟାସ କରି ଚୁପ୍ ଚାପ୍ ଶୋଇବାକୁ ଚେଷ୍ଟାକରି ଆଖି ବନ୍ଦକରି ।

ତା'ପର ଦିନ ସକାଳୁ ଦିଦିକୁ ମୋ ମନ ଭାବର ସମ୍ୟକ୍ ସୂଚନା ପର୍ଯ୍ୟନ୍ତ ନଦେଇ ମୁଁ ଘରକୁ ଚାଲି ଆସିଥିଲି । ଯେଉଁ ଦିଦି ମୋତେ ପ୍ରାଣ ଠାରୁ ଅଧିକ ଭଲ ପାଉଥିଲା । ମୋ ପାଇଁ ଯିଏ ନିଜ ଜୀବନକୁ ତିଳ ତିଳ କରି ଜଳାଞ୍ଜଳି ଦେଇଥିଲା ତା' ମନରେ ମୁଁ ଏତେ ବଡ ଆଘାତ ଦେଇ ପାରିଥାନ୍ତି ବା କେମିତି ? ଏ ଘଟଣାର ଅଳ୍ପ କେତେ ଦିନ ପରେ ପରେ ପ୍ରଫେସର ଚାଟାର୍ଜିଙ୍କ ଠାରୁ ଚିଠିଟିଏ ପାଇଲି ।

ସ୍ନେହର ବିପ୍ଳବ,

ଦୁଃଖର ସହିତ ତତେ ଜଣାଇବାକୁ ବାଧ୍ୟ ହେଉଛି ଯେ କୁସୁମ ଦୁଇଦିନ ହେବ କେଉଁଆଡେ ଚାଲି ଯାଇଛି । ଚାରିଆଡେ ଖୋଜା ଖୋଜି ଚାଲିଛି । ଥାନାରେ ମଧ ଖବର ଦିଆ ଯାଇଛି କିନ୍ତୁ କିଛି ସନ୍ଧାନ ମିଳିନାହିଁ । ତୁ ଆଦୌ ବ୍ୟସ୍ତ ହେବୁନି । କୁସୁମର ଅଭାବ ତତେ ଅନୁଭବ କରିବାକୁ ଦିଆଯିବ ନାହିଁ । ତୋର ସବୁ ଦାୟିତ୍ୱ ମୁଁ ବହନ କରିବି । ତୁ ମନଦେଇ ପଢା ପଢି କର । କୁସୁମର ଇଚ୍ଛା ଅନୁସାରେ ତତେ ଡାକ୍ତର ହେବା ପାଇଁ ଚେଷ୍ଟା କରିବାକୁ ପଡିବ ।

ତୋର ଶୁଭାକାଂକ୍ଷୀ<br>
ପ୍ର. ଚାଟାର୍ଜି

ସେଦିନର ଆଲୋଚନା ଏବଂ ପ୍ରଫେସରଙ୍କ ଚିଠିରୁ ମୁଁ ଦୃଢ ନିଶ୍ଚିତ ହୋଇଗଲି ଯେ ପ୍ରଫେସର କବଳରୁ ନିଜକୁ ଏବଂ ନିଜର ଭବିଷ୍ୟତକୁ ରକ୍ଷା କରିବାକୁ ଯାଇ କୁସୁମ ଦିଦି କେଉଁଆଡେ ଚାଲିଯାଇଛି ନିଶ୍ଚୟ । କିନ୍ତୁ କେବେହେଲେ ଆତ୍ମହତ୍ୟା କରିପାରିବ ନାହିଁ ଅନ୍ତତଃ ତା' ଆଦରର ଭାଇ ବିପ୍ଳବ ପାଇଁ ।

ମୁଁ ବହୁତ କାନ୍ଦିଲି, ବହୁତ ମନଦୁଃଖ କଲି, ବହୁତ ନିଜ ମନକୁ ବୁଝେଇଲି । ଦିନ ଦିନ ମାସ ମାସ ଧରି ଦିଦିକୁ ମୋର ମଫସଲ ଠାରୁ ଆରମ୍ଭ କରି ସହରର ଗଳିକନ୍ଦି ପର୍ଯ୍ୟନ୍ତ ଅନେକ ଖୋଜିଲି । କିନ୍ତୁ ଶେଷରେ ନିରାଶ ହେଲି । ମୁଁ ଭୀଷଣ ଭାବରେ ଏକୁଟିଆ ହୋଇଗଲି । ଶେଷରେ ନିଜ ମନକୁ ଟାଣ କଲି । ମୋର ଧୈର୍ଯ୍ୟ, ସାହସ, ଆନ୍ତରିକତା ଏବଂ କଠିନ ପରିଶ୍ରମ ମୋତେ ଲକ୍ଷ୍ୟସ୍ଥଳରେ ପହଞ୍ଚିବାରେ ସାହାଯ୍ୟ କଲା । ମୁଁ

ଇଣ୍ଟରମିଡିଏଟ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାଶ୍ କଲି ଏବଂ ପରେ ପରେ ମେଡିକାଲ୍ ପଢିବା ପାଇଁ ମଧ୍ୟ ସିଲେକ୍ଟ ହୋଇଗଲି । ମୋ ଦିଦିର ବହୁ ପ୍ରତିକ୍ଷିତ ସ୍ୱପ୍ନକୁ ସାକାର କରି ପାରିଥିବାରୁ ମନେ ମନେ ମୁଁ ବହୁତ ଉଲ୍ଲସିତ ହୋଇଥିଲି । ମୋ ସଫଳତା ପଛରେ ପ୍ର. ଚାଟାର୍ଜୀଙ୍କ ଅକୁଣ୍ଠିତ ସାହାଯ୍ୟ, ସହାନୁଭୂତି ଏବଂ ପ୍ରେରଣାର ମୂଲ୍ୟ କିଛି କମ୍ ନ ଥିଲା । ସେଥିପାଇଁ ମୁଁ ତାଙ୍କ ପାଖରେ ଗଭୀର ଭାବରେ ଋଣୀ ।

ମେଡିକାଲ ଆଡ୍‌ମିସନ୍ ପରେ ଆନାଟମି ଡିପାର୍ଟମେଣ୍ଟରେ ଆଜି ମୋର ପ୍ରଥମ ଡିସେକ୍‌ସନ୍ କ୍ଲାସ୍ । କ୍ଲାସ୍‌କୁ ଆସିବା ପୂର୍ବରୁ ପ୍ର. ଚାଟାର୍ଜୀଙ୍କ ରୁମ୍‌କୁ ଯାଇ ଭୂମିଷ୍ଠ ପ୍ରଣାମ କରି ତାଙ୍କଠାରୁ ଆଶୀର୍ବାଦ ଭିକ୍ଷାକଲି । ଡିସେକ୍ସନ ବାକ୍‌ସ ହାତରେ ଧରି ପ୍ରବେଶ କଲି ଏଇ ହଲକୁ । ଆମ ଗ୍ରୁପ୍‌ରେ ଷୋଳଜଣ ଛାତ୍ରଙ୍କୁ ଦିଆଗଲା ଏଇ ଦଶ ନମ୍ବର ଟେବୁଲରେ ଥିବା ବଡିର ଡିସେକସନ୍ ପାଇଁ । ଟେବୁଲ ପାଖରେ ପହଞ୍ଚି ହାତରେ ଛୁରୀଧରି ଯାହାକୁ ସାମ୍ନାରେ ଦେଖିଲି ବିଶ୍ୱାସ କରି ପାରିଲିନି । ଭଲଭାବରେ ବାରମ୍ବାର ଦେଖିଲି । ସେଇ ଶାନ୍ତ ସରଳ ମୁହଁ, ସେଇ ଅର୍ଦ୍ଧ ନିମିଳିତ ଆଖି, କପାଳରେ ସେଇ ଅଭିଳାଷଣଟା ଚିହ୍ନ । ଆଉ କ'ଣ ପାଇଁ ଅବିଶ୍ୱାସ କରିଥାନ୍ତି ଯେ ? ଗୋଟାଏ ଶକ୍ତ ବିଜୁଳି ଧକ୍କା ଖାଇଲା ଭଳି ଅନୁଭବ କଲି ମୁଁ । ମୋ ଆଖି ସାମ୍ନାରେ ସବୁ ଗୁଡାକ ଅସ୍ପଷ୍ଟ ଚିତ୍ର ସ୍ପଷ୍ଟ ହୋଇ ଉଠିଲା । ମୁଁ ଅନୁଭବ କଲି ସତେଯେମିତି ପ୍ର. ଚାଟାର୍ଜୀ କୁସୁମଦିଦିର ଶୋଇବା ଘରେ ପ୍ରବେଶ କରି ତା' ମୁହଁରେ ତକିଆ ପକାଇ ମାଡି ବସୁଛନ୍ତି । ଛଟପଟ୍ ହୋଇ ଦିଦିର ଦୁର୍ବଳ ଶରୀରଟା ନିସ୍ତେଜ ହୋଇଯାଇ ସବୁ କିଛି ଶେଷ ହୋଇ ଯାଉଛି । ସେଇ ଗଭୀର ରାତ୍ରିରେ ସମସ୍ତଙ୍କ ଅଗୋଚରରେ ପ୍ରଫେସର ନିଜେ ଦିଦିର ଶବଟାକୁ ତାଙ୍କ କାର୍‌ରେ ବୋହି ନେଇ ହାଓଡା ପୋଲ ଉପରୁ ହୁଗୁଳି ନଦୀର ଗଭୀର ଜଳରାଶି ଭିତରକୁ ଠେଲି ଦେଇ ନିର୍ଦ୍ୱନ୍ଦରେ ସୁନାପିଲାଟି ପରି ଫେରି ଆସୁଛନ୍ତି । ତହିଁ ପରଦିନ ଶବ ଯୋଗାଣକାରୀ ସଂସ୍ଥାରୁ କେହି ଜଣେ ଅର୍ଥଲୋଭି ନୃସଂଶ ଶବଟାକୁ ହୁଗୁଳି ନଦୀ କୂଳରୁ ଉଠାଇ ଆଣି କେତେଟା ଟଙ୍କା ବିନିମୟରେ ଆନାଟମି ବିଭାଗକୁ ବିକ୍ରିକରି ଦେଉଛି । ସେହି ଦିନରୁ ଦିଦି ମୋର ଫରମାଲିନ୍ ଟାଙ୍କି ଭିତରେ ପଡିରହି ଶେଷ ଦେଖା ପାଇଁ ସତେ ଯେମିତି ମତେ ହିଁ ପ୍ରତୀକ୍ଷା କରିଛି ।

ପ୍ରଫେସର ଚାଟାର୍ଜିର ମୋ' ଦିଦି ସହିତ ଥିବା ଅବୈଧ ସମ୍ପର୍କକୁ ମୁଁ ଆଖି ବୁଜି ସହ୍ୟକରି ନେଇଥିଲି । କାରଣ ଦିଦି ଆଉ ମୋ' ଭିତରେ ଭଲ ପାଇବା ଅତି ନିବିଡ ଥିଲା । ମତେ ସଂପୂର୍ଣ୍ଣ ଏକୁଟିଆ କରି ଦିଦି ମୋର ନିଖୋଜ ହୋଇଗଲା । ସେଥିପାଇଁ ପ୍ରଫେସର ଚାଟାର୍ଜି ଅନେକ ପରିମାଣରେ ଦାୟୀ ବୋଲି ମୁଁ ଜାଣିଥିଲେ ମଧ ସେ ଦୁର୍ଘଟଣାକୁ ଛାତିରେ ପଥର ଲଦି ସହ୍ୟ କରି ନେଇଥିଲି । କାରଣ ସେଥିରେ ମୋର ଅତି ଆଦରଣୀୟ ଦିଦିର ସ୍ୱାର୍ଥ ନିହିତ ଥିଲା ଏବଂ ଦିଦି ମୋର ଦିନେନା ଦିନେ ମୋ ପାଖକୁ ନିଶ୍ଚୟ ଫେରି ଆସିବ, ଆମ ସୁନାର ସଂସାର ପୁଣି ଥରେ ହସି ଉଠିବ, ଏ କଥା ମୁଁ ନିଶ୍ଚିତ ଥିଲି । କିନ୍ତୁ ମୁଁ ସ୍ୱପ୍ନରେ ମଧ କଳ୍ପନା କରି ନଥିଲି ଯେ ଏଇ ଜଲ୍ଲାଦ ଦିନେ ମୋର ପ୍ରାଣ ପ୍ରିୟ ଦିଦିକୁ ନିଜର

ସାମାନ୍ୟ ସ୍ୱାର୍ଥ ସିଦ୍ଧି ପାଇଁ ହତ୍ୟା କରି ବସିବ ଏବଂ ଏଭଳି ଏକ ଅପ୍ରତ୍ୟାଶିତ ପରିବେଶରେ ମୁଁ ମୋର୍ ଦିଦିର ଶବଟାକୁ ଆବିଷ୍କାର କରିବି, ପୁଣି ମୋରି ହାତରେ ଖିନ୍ ଭିନ୍ ହୋଇ କଟାଯିବା ସମୟରେ ।

ଏ ବିଭତ୍ସ ଦୃଶ୍ୟ, ଏ ବାସ୍ତବ ସତ୍ୟ, ଏ ଶକ୍ତ ଧକ୍କା ମୁଁ ସହ୍ୟକରି ପାରିଲି ନାହିଁ ଇନିସ୍‌ପେକ୍ଟର । ଯେଉଁ ହାତର ତୀକ୍ଷ୍ଣ ଛୁରୀଟା ଆଗେଇ ଯାଇଥିଲା କୁସୁମ ଦିଦିର ନରମ ଛାତିଟାକୁ ଦିଫାଳ କରି ଚିରି ଦେଇ ତା'ର ସୂକ୍ଷ୍ମ ଅଙ୍ଗ ପ୍ରତ୍ୟଙ୍ଗ ଠାରୁ ଆରମ୍ଭ କରି ତା'ର ଦରଦୀ ଆତ୍ମା ପର୍ଯ୍ୟନ୍ତ ଖିନ୍ ଭିନ୍ କରି କାଟି କାଟି ପରୀକ୍ଷା କରିବା ପାଇଁ, ସେଇ ଛୁରୀଟାରେ ମୁଁ ଦୌଡ଼ି ଯାଇ ଭୁଷି ଦେଇଥିଲି ପ୍ର.ଚାଟାର୍ଜିର କୁଟୀଳ ଛାତିଟାକୁ । ମୋରି ଆଖି ସାମ୍ନାରେ ତା' ଛାତିରୁ ଗରମ ରକ୍ତର ଧାର ବୋହି ଚାଲିଥିଲା, ତା' ଉଷୁମ୍ ଦେହଟା ସଂପୂର୍ଣ୍ଣ ଶିଥିଳ ହୋଇଯିବା ପର୍ଯ୍ୟନ୍ତ ଠିକ୍ ଯେମିତି ମୋ' ଦିଦିର ଛଟ୍ ପଟ୍ ଶରୀରଟା ନିସ୍ତେଜ ହୋଇ ଯାଇଥିଲା ତା' ଛାତିରୁ ସବୁତକ ପବନ ଶେଷ ହୋଇଯିବା ଯାଏ ।'' ବିପ୍ଳବ କାନ୍ଦ କାନ୍ଦ ହୋଇ ତା' ବକ୍ତବ୍ୟରେ ପୂର୍ଣ୍ଣଚ୍ଛେଦ ଟାଣିଥିଲା ।

'' ଏଇଟା ତମର କଳ୍ପନା ମାତ୍ର ହୋଇ ପାରେ ବିପ୍ଳବ । ଯା ପଛରେ ସତ୍ୟତା କ'ଣ ଅଛି ?'' ଦୀର୍ଘଶ୍ୱାସ ଟାଣି ପ୍ରଶ୍ନ କଲେ ଇନିସ୍‌ପେକ୍ଟର ବାନାର୍ଜି ।

'' ମୁଁ ମିଛ କହୁନି ଇନିସ୍ପେକ୍ଟର ବାବୁ । ମତେ ବିଶ୍ୱାସ କରନ୍ତୁ । ସେଇଥି ପାଇଁ ତ କହୁଛି, ମୋ' ଦିଦିର ଏ ଡେଡ୍ ବଡିକୁ ପୋଷ୍ଟମର୍ଟମ କରି ଦେଖାଯାଉ ତା' ପେଟରେ ତିନିମାସର ପିଲା ଅଛି କି ନାହିଁ ? ତା'ର ମୃତ୍ୟୁ ଶ୍ୱାସରୁଦ୍ଧଜନିତ ନା ସ୍ୱାଭାବିକ୍ ?'' ବିପ୍ଳବ କଣ୍ଠରେ ଅତି ମାତ୍ରାରେ ଜିଦ୍ଦି । ବିପ୍ଳବର କରୁଣ ଜୀବନ ଇତିହାସ ଏବଂ ଅକାଟ୍ୟ ଯୁକ୍ତି ଇନିସ୍‌ପେକ୍ଟର ବାନାର୍ଜିଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲା ଏବଂ ତା' ପ୍ରସ୍ତାବରେ ସମ୍ମତ ହେବାକୁ ସେ ବାଧ୍ୟ ହୋଇଥିଲେ ।

ପ୍ରଚଣ୍ଡ କୋଳାହଳ ଭିତରେ ଆଗପଛ ହୋଇ ଦୁଇଟି ଶବ ବୁହା ହୋଇ ଚାଲିଥିଲେ ଫରେନ୍‌ସିକ୍ ବିଭାଗ ଅଭିମୁଖେ । ଶବ ଶୋଭାଯାତ୍ରା ଏକ ହୋଇଥିଲେ ମଧ୍ୟ ଦୁଇଟି ଶବ ମଧ୍ୟରେ ଥିଲା ପାର୍ଥକ୍ୟ ଅନେକ । ଗୋଟିଏ ପୁରୁଷର, ଅନ୍ୟଟି ନାରୀର । ଗୋଟିଏ ସଦ୍ୟସୁବାସିତ, ଅନ୍ୟଟି କାହିଁକେତେ ପୂତି ଗନ୍ଧଯୁକ୍ତ । ଗୋଟିଏ ସୁଦୃଶ୍ୟ ନବ ବସ୍ତ୍ରରେ ଆଚ୍ଛାଦିତ, ଅନ୍ୟଟି ସଂପୂର୍ଣ୍ଣ ବସ୍ତ୍ରବିବର୍ଜିତ । ଗୋଟିକୁ ବୋହି ନେଉଥିଲେ କାହିଁ କେତେ ଭଦ୍ର ନାଗରିକ, ଅନ୍ୟଟିକୁ ଠେଲା ଗାଡିରେ ଟାଣିନେଉଥିଲେ ଦୁଇଟି ମାତ୍ର ଝାଡୁଦାର, ଗୋଟିକ ପାଇଁ ଅବାସ୍ତବ ଅଶ୍ରୁଧାର ଝରୁଥିଲା । ଅନେକ ଆଖିରୁ, ଅନ୍ୟଟି ପାଇଁ ବାସ୍ତବ ଅଶ୍ରୁ ଝରୁଥିଲା ମାତ୍ର ଜଣକ ଆଖିରୁ । କ୍ରମଶଃ ଫରେନ୍‌ସିକ୍ ବିଭାଗ ନିକଟରେ ଲୋକଙ୍କ ଭିଡ ଜମୁଥିବା ବେଳେ ନିଜର ସବୁତକ ଅଶା-ଭରସା, ସ୍ୱପ୍ନ - ଭବିଷ୍ୟତ ସବୁ କିଛିକୁ ପୁଟୁଳା ବାନ୍ଧି ଆନାଟମି ବିଭାଗ ଡିସେକ୍‌ସନ୍ ହଲର ଦଶ ନମ୍ବର ମାର୍ବଲ ଟେବୁଲ ଉପରେ ରଖି ଦେଇ ପୋଲିସ୍ ଭ୍ୟାନ୍‌ର ପଛପଟ ଦରଜା ବାଟେ ଭିତରକୁ ପ୍ରବେଶ କରୁଥିଲେ ବିପ୍ଳବ କୁମାର ।

# ଭସା ବାଦଲର ଛାଇ

ଘର ସାମ୍ନାରେ ଜିପ୍‌ଟିଏ ଅଟକିବାର କର୍କଶ ଶବ୍ଦରେ କୌତୁହଳ ପ୍ରକାଶ କରି ଝରକାର ପର୍ଦ୍ଦା ଆଡେଇ ବାହାରକୁ ଲକ୍ଷ୍ୟକଲେ ଡାକ୍ତର ମହେଶ୍ୱର ଦାସ । ମଧ୍ୟମ ବୟସ୍କ ଗୌରବର୍ଣ୍ଣ ସୁଦର୍ଶନ ଯୁବକ ଡ. ଦାସ । ନିପଟ ମଫସଲ ଅଞ୍ଚଳର ନରହରିପୁର ଅପ୍‌ଗ୍ରେଡେଡ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ସେ ସ୍ତ୍ରୀ ରୋଗ ବିଶେଷଜ୍ଞ । ଏଭଳି ଗୋଟାଏ ଅଗମ୍ୟ ଅଞ୍ଚଳରେ ସେ ପ୍ରାୟ ବର୍ଷଟିଏ କେତେ କଷ୍ଟରେ କଟାଇଛନ୍ତି ତାହା କେବଳ ତାଙ୍କୁ ହିଁ ଜଣା । ଡାକ୍ତରଖାନା ଠାରୁ ସାତ କିଲୋମିଟର ଦୂରରେ ବସ୍ ଅଟକେ । ରାସ୍ତା ଘାଟର ଅବସ୍ଥା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ଆଖପାଖରେ ସମସ୍କନ୍ଧ ଲୋକଟିଏ ମଧ୍ୟ ନାହିଁ, ଯାହା ସହିତ ଭାବର ଆଦାନ ପ୍ରଦାନ ଟିକିଏ କରିହେବ । କେବଳ ରୋଗୀମାନଙ୍କ ଗହଣରେ କୌଣସି ପ୍ରକାର ସମୟ କଟିଯାଏ । ରୋଗୀମାନେ ହିଁ ତାଙ୍କର ପରିବାର, ପଡୋଶୀ, ବନ୍ଧୁ ସବୁକିଛି ।

ବ୍ୟସ୍ତ ବିବ୍ରତ ଭଦ୍ରବ୍ୟକ୍ତି ଜଣେ ତାଙ୍କ କ୍ୱାର୍ଟର ଆଡକୁ କ୍ଷିପ୍ର ଗତିରେ ମାଡି ଆସୁଥିବାର ଲକ୍ଷ୍ୟକଲେ ଡା. ଦାସ । କଥା କ'ଣ ଜାଣିବା ପାଇଁ ତାଙ୍କର ଉତ୍କଣ୍ଠା ମଧ୍ୟ ବଢି ଚାଲିଥିଲା, ଲୋକଟିର ଇତସ୍ତତ ପାଦ ସହିତ ତାଳ ମିଳାଇ ।

''ସାର୍, ଟିକିଏ ଶୀଘ୍ର ଆସନ୍ତୁ । ମୋ' ପିଲାଟିର ଅବସ୍ଥା ସାଂଘାତିକ।'' ଲୋକଟିର ତଣ୍ଟି ଶୁଖି ପାଟି ଖନି ବାଜି ଯାଉଥିଲା ।

''କ'ଣ ହେଇଛି ?'' ଡା. ଦାସ ବାହରକୁ ଆସି ପ୍ରଶ୍ନ କଲେ ।

'' ପିଲାଟିକୁ ସାପ କାମୁଡି ଦେଇଛି ସାର୍ । ସେ ମୋର ଏକମାତ୍ର ସନ୍ତାନ । ତାକୁ ବଞ୍ଚେଇ ଦିଅନ୍ତୁ । ନହେଲେ ମୋ ସଂସାର ଉଛନ୍ନ ହୋଇଯିବ । '' ଲୋକଟିର ଆଖିରେ ଆଖିଏ ଲୁହ ଜକେଇ ଆସିଥାଏ ।

''ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଶୀଘ୍ର ପିଲାଟିକୁ ୱାର୍ଡ ଭିତରକୁ ନେଇ ଚାଲନ୍ତୁ ।'' ଆଉ କିଛି ପଚାରିବାକୁ ଉଚିତ ମନେ କଲେନାହିଁ ଡା. ଦାସ ।

ଷ୍ଟେଥୋସ୍କୋପଟି ଧରି ପିଲାଟି ଉପରେ କ୍ଷୀପ୍ର ଦୃଷ୍ଟି ବୁଲାଇ ଆଣିଲେ ଡା. ଦାସ । ଦୁଇ ମାସର ଛନ ଛନ କଅଁଳିଆ ଶିଶୁଟିର ନିଶ୍ଚଳ ଶରୀର । ବାମପଟ କପାଳରେ ସର୍ପାଘାତର ସ୍ପଷ୍ଟଚିହ୍ନ । ଆଶଙ୍କା ଜର୍ଜରିତ ମନ ନେଇ ସେ ପରୀକ୍ଷା କରିବାକୁ ଲାଗିଲେ ଶିଶୁଟିର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗକୁ । କ୍ରମେ ମୁଖମଣ୍ଡଳ ତାଙ୍କର ଆକାଶ ଭଳି ଗମ୍ଭୀର ହୋଇ ଉଠିଲା । ଦୁଃଖ ଏବଂ ନୈରାଶ୍ୟର ଦୀର୍ଘଶ୍ୱାସ ବାହାରି ଆସିଥିଲା ତାଙ୍କ ଅଜଣାତରେ ।

'' ମୁଁ ଦୁଃଖିତ । ଆପଣଙ୍କୁ କିଛି ସାହାଯ୍ୟ କରି ହେଲାନି । ବହୁତ ଡେରି ହେଇଗଲା ।'' ଡା. ଦାସଙ୍କୁ କହିବାକୁ ବଡ ଅସ୍ୱସ୍ତି ଲାଗୁଥିଲା । ଭଦ୍ରଲୋକ ହଠାତ୍ ଭୋ

ଭୋ କରି କାନ୍ଦିବାକୁ ଲାଗିଲେ । ପରିସ୍ଥିତିର ଗମ୍ଭୀରତାକୁ ଏଡାଇଯିବା ପାଇଁ ଡା. ଦାସ ଆଗେଇ ଯାଇଥିଲେ ଅପେକ୍ଷାରତ ଜିପ୍‌ର ଡ୍ରାଇଭର ନିକଟକୁ ।

" ବାବୁ କେଉଁଠୁ ଆସିଥିଲେ ? " ଡ୍ରାଇଭରକୁ ଧୀର ସ୍ୱରରେ ପଚାରିଲେ ଡା. ଦାସ ।

" ବିଳାସପୁରରୁ ସାର୍ । ବାବୁ ଆମ ବ୍ଲକର ଜୁନିୟର ଇଞ୍ଜିନିୟର । ଭାରି ଭଲ ଲୋକ ଆଜ୍ଞା । ଏଭଳିଆ ଲୋକକୁ ଭଗବାନ ଯେ କାହିଁକି ଦଣ୍ଡ ଦିଅନ୍ତି କେଜାଣି ? ପିଲାଟି ଭଲ ହୋଇଯିବତ ସାର୍ ?" ଡ୍ରାଇଭର କଣ୍ଠରେ ଉତ୍କଣ୍ଠା ଭରି ରହିଥିଲା । ଡ.ଦାସ କିନ୍ତୁ ନିରବରେ ଚିନ୍ତା କରି ଚାଲିଥିଲେ ।

" ମା' ବହୁତ ଜିଦ୍ ଧରିଥିଲେ ଏ ଡାକ୍ତରଖାନାକୁ ନ ଆସି କଟକ ନେଇଯିବାପାଇଁ । କିନ୍ତୁ ଆଉ ସମୟ କୋଉଠି ଥିଲା ? ବାବୁ ବାଧ ହୋଇ ଏଇଠିକି ଆଣିଲେ ।" ଡ୍ରାଇଭର ଅବଶୋଷ ଭରା କଣ୍ଠରେ ଗପି ଚାଲିଥିଲା ।

ବିଳାସପୁରର ସ୍ମୃତି ଡା. ଦାସଙ୍କୁ ବିବ୍ରତ କରୁଥିଲା । ସେ ପରସ୍ତ ପରସ୍ତ କରି ଖୋଲିବାକୁ ଚେଷ୍ଟା କରୁଥିଲେ ପ୍ରାୟ ବର୍ଷେ ତଳର ସେଇ ସ୍ମୃତିର ଆବରଣକୁ ।

ବଦଳି ଅର୍ଡର ପାଇ ସେଦିନ ସେ ଜଏନ୍ କରିବାକୁ ଆସୁଥାନ୍ତି ନରହରିପୁର ଅପ୍‌ଗ୍ରେଡେଡ୍ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ । ସେ ଦିନର ଭାଗ୍ୟ ବିଡମ୍ବନା କଥା ମନେ ପକାଇ ଦେହ ତାଙ୍କର ଶିହିରି ଉଠୁଥାଏ । ଅଜଣା ରାଜ୍ୟକୁ ଏକଲା ପଥିକ । ଦୁର୍ଯୋଗକୁ ବାଟରେ ବସ୍‌ଟା ମଧ ଖରାପ ହେଲା । ବସ୍‌ର ଶେଷ ଷ୍ଟପେଜ ବିଳାସ୍‌ପୁରରେ ପହଞ୍ଚିବାକୁ ପ୍ରାୟ ତିନିଘଣ୍ଟା ବିଳମ୍ବ । ରାତି ନଅଟାରେ ନରହରିପୁର ପର୍ଯ୍ୟନ୍ତ ସାତ କିଲୋମିଟର ରାସ୍ତା ଚାଲି ଚାଲି ଯିବା ବ୍ୟତିତ ଅନ୍ୟ କୌଣସି ଉପାୟ ନଥିଲା । ସେଠାରେ ରାତିଟା କଟେଇବା ପାଇଁ ଲଜିଂଟିଏ ନାହିଁ କିମ୍ବା କେହି ଚିହ୍ନା ଲୋକଟିଏ ମଧ ନାହିଁ । ପାଖ ଦୋକାନରେ ଚା' କପଟିଏ ପିଇ ସିଗାରେଟ୍‌ରେ ନିଆଁ ଧରାଉ ଧରାଉ ଦୂର ଆକାଶ ଉପରେ ନଜର ପଡିଗଲା ତାଙ୍କର । ସର୍ବଗ୍ରାସୀ କଳାହାଣ୍ଡିଆ ମେଘଖଣ୍ଡେ ଆଁ କରି ପୃଥିବୀକୁ ଗ୍ରାସ କରିବାକୁ ମାଡିଆସୁଛି । ଏ ଅପନ୍ତରା ବସ୍‌ଷ୍ଟାଣ୍ଡରେ ଆଉ ଅପେକ୍ଷା କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଛୋଟ ବ୍ରିଫ୍‌କେଶ ଖଣ୍ଡିକ ହାତରେ ଧରି ଦ୍ରୁତ ପଦକ୍ଷେପରେ ରାସ୍ତାଧରିଲେ ଡା. ଦାସ । ବିପର୍ଯ୍ୟୟ କିନ୍ତୁ ତାଙ୍କ ପିଛା ଛାଡିବାକୁ ନାରାଜ । ତାଙ୍କୁ ଅସ୍ତବ୍ୟସ୍ତ କରି ପ୍ରଚଣ୍ଡ ପବନ ବହିବା ସାଙ୍ଗେ ସାଙ୍ଗେ ବିଜୁଳି ଆଲୁଅ ସବୁ ଫୁସ୍ ଫାସ୍ ଲିଭିଗଲା । ଆଃ, କି ଭୟଙ୍କର ପରିସ୍ଥିତି । କ'ଣ କରିବେ ବୋଲି ଚିନ୍ତା କରୁଛନ୍ତି, ହଠାତ୍ ଆସିଗଲା ପ୍ରବଳ ବର୍ଷାର ଜାମୁକୋଳିଆ ଟୋପା । ଅନନ୍ୟୋପାୟ ହୋଇ ସେ ଦୌଡିବାକୁ ଲାଗିଲେ । କିନ୍ତୁ କେତେ ବାଟ ବା ଯାଇପାରିବେ ? ବିଜୁଳିର ଚକ୍ ଚକ୍ ଆଲୁଅରେ ଦେଖିଲେ ରାସ୍ତାକଡରେ ଗୋଟିଏ ଫାଟକ ଖୋଲାଅଛି । କିଛି ଚିନ୍ତା କରିବା ପୂର୍ବରୁ ସେ ଫାଟକ ପାରହୋଇ ଘରର ବାରଣ୍ଡାରେ ପହଞ୍ଚିସାରିଥିଲେ । ସଂପୂର୍ଣ୍ଣ ଭାବରେ ଭିଜିଯାଇଥିବା ତାଙ୍କର ପ୍ୟାଣ୍ଟ

ସାର୍ଟରୁ ବହୁଥିବା ପାଣିରେ ବିଚରା ଶୁଷ୍କ ବାରଣ୍ଡାଟି ତ୍ରାହି ତ୍ରାହି ଡାକ ଛାଡୁଥିଲା । ଘରର ମୁଖ୍ୟ ଦରଜା ଭିତରୁ ବନ୍ଦଥିଲା । ଭିତରେ ମଧ୍ୟରାତ୍ରୀର ନିରବତା । କିନ୍ତୁ ଝାଇନ୍ଲାଇଟ୍‌ରେ ସାମାନ୍ୟ ଆଲୋକର ସୂଚନା ଡ. ଦାସଙ୍କୁ ସାହାସ ସଞ୍ଚୟ କରିବାର କିଛିଟା ଖୋରାକ୍ ଯୋଗାଉଥିଲା । ବାହାରେ ପ୍ରକୃତିର ତାଣ୍ଡବଲୀଳା । ଚକ୍ ଚକ୍ ବିଜୁଳି ସାଙ୍ଗକୁ କାନଫଟା ଘଡ ଘଡିର ବିକଟାଳ ଗର୍ଜନ । କାଛକୁ ଆଉଜି ସେ ସବୁକୁ ସହ୍ୟ କରିବା ଛଡା ଅନ୍ୟ କିଛି ଉପାୟ ନ ଥିଲା । ପ୍ରଚଣ୍ଡ ବର୍ଷା ଆଉ ସୁ ସୁ ପବନରେ ତାଳେ ତାଳେ କେତେକ ଦୀର୍ଘକାୟ ବୃକ୍ଷମାନଙ୍କର ପୃଥିବୀରାଣୀକୁ ଚୁମ୍ବନ ଦେବାର ନିଷ୍ଫଳ ପ୍ରଚେଷ୍ଟା ଡା. ଦାସଙ୍କୁ ବେଶ୍ ଆନନ୍ଦ ଦେଉଥିଲେ ହେଁ ତା'ର ଭୟଙ୍କର ପରିଣତି ଚିନ୍ତାକରି ଆଶଙ୍କାରେ ମ୍ରୀୟମାଣ ହୋଇପଡୁଥିଲେ ।

" କିଏ ? " ହଠାତ୍ ଘର ଭିତରୁ ନାରୀ କଣ୍ଠସ୍ୱର ।

ଡା. ଦାସ କିଛିଟା ସାହାସ ପାଇଲେ ମଧ୍ୟ ଅପ୍ରସ୍ତୁତ ହେଲେ । ବର୍ଷା ଛାଡିବା ପରେ ଚୁପ ଚାପ୍ ଚାଲି ଯାଇଥାନ୍ତେ । ବଡ଼ ଅସୁବିଧାରେ ପଡିଲେ । ଘର ମାଲିକ ତାଙ୍କୁ କ'ଣ ବୋଲି ଭାବୁଥିବେ କେଜାଣି ?

" ମୁଁ ପଚାରୁଛି ବାହାରେ କିଏ ?" ଏଥର ଚଢା ଗଳାର ଆୱାଜ ।

" ମୁଁ ବହୁତ ଦୂରରୁ ଆସିଛି । ନରହରିପୁର ଡାକ୍ତରଖାନାକୁ ଯିବି । ବର୍ଷା ପବନ ପାଇଁ ଏଇଠି ଅଟକି ଯାଇଛି ।" ବାଧ୍ୟହୋଇ ଉତ୍ତର ଦେଲେ ଡା. ଦାସ ।

" ଏତେ ରାତିରେ ନରହରିପୁର ଯିବେ କେମିତି ?"

" ଯେମିତି ହେଲେ ବି ଯିବାକୁ ହେବ ।"

" ଆପଣ କ'ଣ ଡାକ୍ତରଖାନା ଷ୍ଟାଫ୍ ?"

"ହଁ, ମୁଁ ଡକ୍ଟର ଦାସ । ସେ ଡାକ୍ତରଖାନାରେ ଜଏନ୍ କରିବାକୁ ଆସିଛି ।"

" ଭିତରକୁ ଆସିବେ ?"

ଏଭଳି ପ୍ରଶ୍ନ ପାଇଁ ଡ. ଦାସ ଆଦୌ ପ୍ରସ୍ତୁତ ନଥିଲେ ।

" ନାଇଁ , ଦରକାର ନାହିଁ । ଆଉ କିଛି ସମୟ ଏଇଠି କଟେଇ ନେଇ ଚାଲିଯିବି । "

" ବର୍ଷା କିନ୍ତୁ ଏତେଶୀଘ୍ର ଛାଡିବା ଭଳି ଲାଗୁନି ବରଂ ଆପଣ ଭିତରେ ଆସି ବସନ୍ତୁ । କେତେ ସମୟ ବାହାରେ ଅପେକ୍ଷା କରିବେ ?"

ମନେମନେ ସ୍ତ୍ରୀ ଲୋକଟିକୁ ଧନ୍ୟବାଦ ଜଣାଉଥିଲେ ଡା. ଦାସ ।

ଏଥର କବାଟ ଖୋଲିଲା । ଲଣ୍ଠନର କ୍ଷୀଣ ଆଲୋକରେ ଭଦ୍ରମହିଳାଙ୍କ ଆପାଦମସ୍ତକ ଲକ୍ଷ୍ୟ କରୁଥିଲେ ଡା. ଦାସ । ଅନିନ୍ଦ୍ୟସୁନ୍ଦର ସ୍ୱାସ୍ଥ୍ୟ, ବୟସ ପ୍ରାୟ ତିରିଶ ପାଖାପାଖି, ଗୋରା ତକ୍ ତକ୍ ଦେହକୁ ଲାଲ୍ ଛିଟ ଶାଢୀ, ବଡ ସିନ୍ଦୁର ଟୋପା ସାଙ୍ଗକୁ ଟକ୍ ମକ୍ ଲାଲ୍ ସିମନ୍ତ ସିନ୍ଦୁର, ଓଠରେ ଜଳାଜାଇ ଦାଗକୁ କଜ୍ଜଳମଖା ଲମ୍ବା ଆଖି ବେଶ୍ ମାନୁଥିଲା ତାଙ୍କୁ । ମୋଟାମୋଟି ଖୁବ୍ ଆକର୍ଷଣୀୟ ଥିଲା ଭଦ୍ରମହିଳାଙ୍କ ରୂପ ଲାବଣ୍ୟ ।

"ଆସନ୍ତୁ, ଭିତରକୁ ଆସନ୍ତୁ।" କଥା କହିବାର ଢଙ୍ଗଟା ବି ବେଶ୍ ଚମତ୍କାର। ଛୋଟିଆ "ଧନ୍ୟବାଦ" ଟିଏ ଦେଇ ଭିତରକୁ ପଶିଲେ ଡା. ଦାସ। ଡ୍ରଇଂରୁମର ଆସବାପତ୍ର ଏବଂ ସାଜସଜ୍ଜାରୁ ଲାଗୁଥିଲା ମଧ୍ୟବିତ୍ତ ପରିବାରର ଭଦ୍ର ପରିବେଶ।

"ଆପଣ ପୂରାପୂରି ଭିଜି ଯାଇଛନ୍ତି ଯେ। ମୁଁ ଟାୱେଲ୍ ଆଣୁଛି।"

"ନାହିଁ ଥାଉ, ମୋର ଟାୱେଲ ଅଛି।"

"ତା'ହେଲେ ଆପଣ ପୋଛା ପୋଛି କରି ବଦଳାଇ ନିଅନ୍ତୁ, ମୁଁ ଚା' କରୁଛି।" ଭଦ୍ରମହିଳା ଭିତରକୁ ଗଲେ। ଟ୍ରାଉଜର ପଞ୍ଜାବୀ ବଦଳାଇ ମୁଣ୍ଡଟିକୁ ଚିକ୍କଣ କରି କୁଣ୍ଡେଇ ନେଇ ସୋଫାର ଗୋଟିଏ ସିଟ୍ ଅଧିକାର କରି ଚିନ୍ତାମଗ୍ନ ହୋଇଗଲେ ଡା. ଦାସ। ଭଦ୍ରମହିଳାଙ୍କ ବ୍ୟବହାର ଏବଂ ଆତିଥ୍ୟରେ ସେ କୃତ୍ୟ କୃତ୍ୟ ହୋଇ ଉଠୁଥିଲେ। ଝୁମ୍ ଝୁମ୍ ପାଦ ଶବ୍ଦରେ ତାଙ୍କର ମୋହ ଭଙ୍ଗ ହେଲା।

"ନିଅନ୍ତୁ, ଚା' ପିଇନିଅନ୍ତୁ, ନହେଲେ ଥଣ୍ଡା ଧରିବ ଯେ।" ଅନ୍ୟ ଏକ ସୋଫାରେ ନିଜେ ବସି ପଡ଼ିଲେ।

ଡା. ଦାସ ବଡ଼ ଆଗ୍ରହରେ ଚା' ପିଉଥିଲେ। ସେ ସମୟରେ ଚା' କପଟି ତାଙ୍କୁ ଅମୃତର ସ୍ୱାଦ ଦେଉଥିଲା ଏବଂ ତାଙ୍କର କ୍ଳାନ୍ତି ଦୂରକରି ପାରିଥିବାରୁ ଯେତିକି ଭଲ ଲାଗୁଥିଲା, ତା' ଠାରୁ ଅଧିକ ଭଲ ଲାଗୁଥିଲା ଜଣେ ସଦ୍ୟପରିଚିତା ସୁନ୍ଦରୀ ତରୁଣୀ ହାତରେ ତିଆରି ବୋଲି। ବାହାରେ ଝଡ ବର୍ଷାର ପ୍ରକୋପ କମିନଥାଏ। ଘର ଭିତରେ କିନ୍ତୁ ସଂପୂର୍ଣ୍ଣ ନିରବତା। ଭଦ୍ର ମହିଳା ମଝିରେ ମଝିରେ ନଜର ବୁଲାଇ ଆଣୁଥାନ୍ତି ଡା. ଦାସଙ୍କ ଦିବ୍ୟ ଚେହେରା ଉପରେ।

"ଆପଣଙ୍କ ବାବୁ କ'ଣ ଏତେ ଶୀଘ୍ର ଶୋଇ ଗଲେଣି ? ପିଲାମାନଙ୍କର ପାଟି ମଧ୍ୟ ଶୁଭୁ ନାହିଁ।" ଅସହ୍ୟ ନିରବତା ଭାଙ୍ଗି ଆରମ୍ଭ କଲେ ଡା.ଦାସ।

ଭଦ୍ର ମହିଳା ନିରବ। ଦୃଷ୍ଟି ତାଙ୍କର ଚଟାଣ ଉପରେ ନିବଦ୍ଧ। ସତେ ଯେମିତି ମାଟିତକୁ ପୁରୁଣା ଇତିହାସକୁ ଗୋଡ ନଖରେ ଖୋଳିବାକୁ ଚେଷ୍ଟା କରୁଛନ୍ତି। ମୁଖମଣ୍ଡଳ ଗମ୍ଭୀର। ଡା. ଦାସ ଅପ୍ରତିଭ ହେଲେ। ବୋଧହୁଏ ପ୍ରଶ୍ନରେ କିଛି ତ୍ରୁଟି ରହିଗଲା। କିଛି ସମୟର ନିରବତା ପରେ ଭଦ୍ରମହିଳା ପାଟି ଖୋଲିଲେ।

"ବାବୁ କାଲିଠୁ ଭୁବନେଶ୍ୱର ଯାଇଛନ୍ତି ଅଫିସ୍ କାମରେ। ସେ ଏଇ ବ୍ଲକ୍‌ର ଜୁନିୟର ଇଞ୍ଜିନିୟର। ତା' ଛଡା ଆମର କିଛି ପିଲାପିଲି ନାହାଁନ୍ତି। ହବାର ମଧ୍ୟ ସମ୍ଭାବନା ନାହିଁ।" ତାଙ୍କ ଆଖିରେ ଆଖିଏ ରୂପେଲି ଲୁହ ଚକ୍ ଚକ୍ କରୁଥିଲା।

ଗୋଟିଏ ସ୍ତ୍ରୀ ଲୋକର ସେଣ୍ଟିମେଣ୍ଟ୍‌କୁ ଆଘାତ୍ କରିଥିବାରୁ ଡା. ଦାସ ମନେ ମନେ ଦୁଃଖିତ ଯେତିକି ହେଉଥିଲେ ଏଭଳି ଗୋଟିଏ ନାରୀର କୋଳକୁ ଶୂନ୍ୟ ରଖିଥିବାରୁ ଭଗବାନଙ୍କୁ ଧିକ୍କାର ମଧ୍ୟ କରୁଥିଲେ।

''ମ୍ୟାରେଜ୍ କେତେ ବର୍ଷ ହେଲାଣି ?'' ସହାନୁଭୂତିର ସହ ପ୍ରଶ୍ନ କଲେ ଡା. ଦାସ ।

'' ପ୍ରାୟ ଦଶ ବର୍ଷ ହେବ ।''

''କୌଣସି ଡାକ୍ତରଙ୍କ ସହ ପରାମର୍ଶ କରିଛନ୍ତି ?''

'' ବହୁତ ଡାକ୍ତର ଗଲେଣି । କେତେ ଯେ ପରୀକ୍ଷା ନିରୀକ୍ଷା ଏବଂ ଔଷଧପତ୍ର କରାଗଲାଣି ତା'ର ଠିକଣା ନାହିଁ କିନ୍ତୁ ଫଳ କିଛି ନାହିଁ ।''

'' ସେ କାଗଜ ପତ୍ର ସବୁ ପାଖରେ ଅଛି ?''

'' ସବୁ ଗୁଡ଼ିକ ଫାଇଲ ହୋଇ ରହିଛି ।''

''ଦେଖନ୍ତୁ, ମୁଁ ଜଣେ ସ୍ତ୍ରୀ ରୋଗ ବିଶେଷଜ୍ଞ । ଯଦି ଆପଣଙ୍କର ଆପତ୍ତି ନଥାଏ, ସେ କାଗଜପତ୍ର ଗୁଡ଼ିକ ଦେଖିପାରେକି ? ଯଦି ଆପଣଙ୍କୁ କିଛି ସାହାଯ୍ୟ କରି ପାରିବି, ଆପଣଙ୍କର ସହାନୁଭୂତିର ଋଣ କିଛିଟା ଶୁଝି ଦେଇ ପାରିବି ।''

ଭଦ୍ର ମହିଳା ମୁହଁ ଟେକି ଚାହିଁଲେ । ଆଖିରେ ତାଙ୍କର ଆଶାର ଆଲୋକ ଉଙ୍କି ମାରୁଥିବାର ଲକ୍ଷ୍ୟ କଲେ ଡା.ଦାସ ।

'' ଆପଣ ଟିକିଏ ବସନ୍ତୁ । ମୁଁ ଆସୁଛି ।'' ଭଦ୍ର ମହିଳା ଭିତରକୁ ଗଲେ ।

'' ଭଦ୍ର ମହିଳାଙ୍କ ଚିନ୍ତାରେ ଡା.ଦାସ ଏମିତି ଭାବରେ ମଜ୍ଜି ଯାଇଥିଲେ ଯେ ସେ ଭୁଲିଯାଇଥିଲେ ସେଦିନର ପରିସ୍ଥିତି, କୁଆଡେ ଆସିଛନ୍ତି ଆଉ କେମିତି ଯିବେ ।

ଫାଇଲ୍‌ଟି ବଢ଼େଇଦେଲେ ଭଦ୍ରମହିଳା । ବଡ ଆଗ୍ରହର ସହିତ ପ୍ରତିଟି କାଗଜରେ ଆଖି ବୁଲେଇ ଆଣି ଟିକିଏ ଗମ୍ଭୀର ହୋଇ ବସିଗଲେ ଡା.ଦାସ । ତାଙ୍କ ମୁହଁ ଏବଂ ଆଖିର ପ୍ରତିଟି ଭାଷାର ଝଲକ ପ୍ରତିଫଳିତ ହେଉଥିଲା ଭଦ୍ରମହିଳାଙ୍କ ମନରେ । ଡ଼. ଦାସଙ୍କ ଗାମ୍ଭୀର୍ଯ୍ୟଭରା ମୁଖ ମଣ୍ଡଳରେ ପୌରୁଷତ୍ୱର ମାଧୁର୍ଯ୍ୟକୁ ଭଦ୍ରମହିଳା ଠିକ୍ ଭାବ୍‌ରେ ଉପଭୋଗ କରୁଥିଲେ ମଧ୍ୟ ଆଶଙ୍କା ତାଙ୍କୁ ବିବ୍ରତ କରୁଥିଲା ।

କ୍ରମଶଃ ଡା. ଦାସଙ୍କ ମୁହଁରେ ସ୍ମିତହାସ୍ୟ ଉକୁଟି ଉଠିଲା । ଭଦ୍ରମହିଳା ମଧ୍ୟ ବେଶ ଉଦ୍‌ଫୁଲ୍ଲିତ ହୋଇଉଠିଲେ ।

'' ଚେଷ୍ଟାକଲେ ଆପଣ ମା' ହୋଇ ପାରିବେ ମିସେସ୍ ମିଶ୍ର ।''

'' ସତରେ ମୁଁ ମା' ହୋଇ ପାରିବି ଡାକ୍ତର ବାବୁ ? କୁହନ୍ତୁ ମୋତେ କ'ଣ କରିବାକୁ ହେବ ? ସବୁପ୍ରକାର ଚେଷ୍ଟା କରିବାକୁ ମୁଁ ପ୍ରସ୍ତୁତ ଅଛି ।'' ସେ ଯେମିତି ପାଗଳିନୀ ହୋଇ ଉଠୁଥିଲେ । ତାଙ୍କର ପ୍ରତିଟି ତନ୍ତ୍ରୀର ଆବେଗ ଓ ଉଦ୍ଦିପନାକୁ ଅତି ସତର୍କତାର ସହ ଲକ୍ଷ୍ୟ କରୁଥିଲେ ଡା. ଦାସ ।

'' ଆପଣ ହୁଏତ ଜାଣିଥିବେ ଯେ ଆପଣଙ୍କର ସ୍ୱାମୀଙ୍କ ଶୁକ୍ର ଗର୍ଭ ଧାରଣ ପାଇଁ ଅନୁପଯୁକ୍ତ କିନ୍ତୁ ଆପଣଙ୍କ ଦେହରେ କୌଣସି ଦୋଷ ତ୍ରୁଟି ନାହିଁ । ତେଣୁ ଆପଣ ଚାହିଁଲେ ଆର୍ଟିଫିସିଆଲ୍ ଇନ୍‌ସେମିନେସନ୍ ପଦ୍ଧତି ଦ୍ୱାରା ଆପଣ ଗର୍ଭଧାରଣ କରିପାରିବେ ଏବଂ ମା' ମଧ୍ୟ ହୋଇ ପାରିବେ ।''

" ସେଇଟା ପୁଣି କ'ଣ ?"

" ଅର୍ଥାତ୍ ଅନ୍ୟଜଣେ ସୁସ୍ଥ ଲୋକର କାର୍ଯ୍ୟକ୍ଷମ ଶୁକ୍ରକୁ ଆପଣଙ୍କ ଗର୍ଭାଶୟରେ ଇଞ୍ଜେକ୍ସେନ୍ ଦ୍ୱାରା ରଖିଦିଆଯିବ । ଏ କାର୍ଯ୍ୟ ଜଣେ ସ୍ତ୍ରୀ ରୋଗ ବିଶେଷଜ୍ଞଙ୍କ ଦ୍ୱାରା କରାଯିବ । ଅବଶ୍ୟ ସେଥିପାଇଁ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କର ସମ୍ମତି ଆବଶ୍ୟକ । କେଉଁ ପୁରୁଷର ଶୁକ୍ର କେଉଁ ସ୍ତ୍ରୀକୁ ଦିଆଯିବ ତାହା ସେମାନେ କେହି ଜାଣିପାରିବେ ନାହିଁ । ସ୍ତ୍ରୀର ଋତୁସ୍ରାବର ଚଉଦଦିନ ପୂର୍ବରୁ ଏହି ଉପଚାର କରାଯିବ । " କହିସାରିବା ପରେ ମିସେସ୍ ମିଶ୍ରଙ୍କ ମୁହଁର କୁଞ୍ଚନକୁ ଲକ୍ଷ୍ୟକରି ଛାପ ଢୋକୁଥିଲେ ଡା. ଦାସ ।

ମିସେସ୍ ମିଶ୍ରଙ୍କ ମୁଖମଣ୍ଡଳ କ୍ରମେ ଅଧିକରୁ ଅଧିକ ଗମ୍ଭୀର ହେବାକୁ ଲାଗିଲା ଏବଂ ସେ ଚୁପ୍‌ଚାପ୍ ଭିତରକୁ ଚାଲିଗଲେ । ଡା. ଦାସଙ୍କ ହୃତ୍ ସ୍ପନ୍ଦନ ବଢ଼ିବାକୁ ଲାଗିଲା । ଜଣେ ଏକାକିନୀ ସ୍ତ୍ରୀ ଲୋକକୁ ଏଭଳି ଗୋଟାଏ ଅସ୍ୱାଭାବିକ କଥାଟା ସିଧା ସିଧା କହିଦେଇ ତାଙ୍କ ସେଣ୍ଟିମେଣ୍ଟକୁ ଆଘାତ କରିଥିବାରୁ ସେ ମନେ ମନେ ଲଜ୍ଜିତ ହେଉଥିଲେ ।

" ଭିତରକୁ ଆସନ୍ତୁ । ଖାଇବାକୁ ବଢ଼ାଗଲାଣି ।" ଭିତରୁ ମିସେସ୍ ମିଶ୍ରଙ୍କ କଣ୍ଠ ଶୁଣାଗଲା । ଡା. ଦାସଙ୍କ ମୁଣ୍ଡରୁ ଗୋଟାଏ ଶକ୍ତ ବୋଝ ଓହ୍ଲାଇ ଯିବା ଭଳି ଲାଗିଲା ।

"ବର୍ଷା କମିଗଲାଣି । ମୁଁ ଏଥର ଚାଲିଯାଇ ପାରିବି । ମୋ ପାଇଁ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ"

"ଇଏ କ'ଣ ଗୋଟାଏ କଥା ? ଆପଣ ଆଜି ମୋ ଘରେ ଅତିଥି । ନ ଖାଇ ଚାଲିଯିବେ ? ନାଇଁ ନାଇଁ, ଆପଣ ଆସନ୍ତୁ । ଖାଇବା ଥଣ୍ଡା ହୋଇଯିବ ।"

ବାଧ୍ୟ ଶିଶୁଟି ପରି ଡାଇନିଂ ଟେବୁଲ୍ ପାଖକୁ ଚାଲିଲେ ଡା. ଦାସ । ମିସେସ ମିଶ୍ର କିଛି ଦୂରରେ ବସି ଖାଲି ଦୀର୍ଘଶ୍ୱାସ ଛାଡୁଥିଲେ । ତାଙ୍କ ଛାତି ଭିତରେ ଉଠିଥିବା ପ୍ରଚଣ୍ଡ ଝଡ, ମନ ଏବଂ ବିବେକ ଭିତରେ ଚାଲିଥିବା ତୁମୁଳ ସଂଘର୍ଷ ତାଙ୍କ କମନୀୟ ମୁଖମଣ୍ଡଳକୁ ଭୀଷଣ ଭାବରେ ପ୍ରଭାବିତ କରୁଥିଲା ।

" ଆପଣଙ୍କର ପିଲାପିଲି କେତୋଟି ଡାକ୍ତର ବାବୁ ? " ପ୍ରଶ୍ନ କଲେ ମିସେସ୍ ମିଶ୍ର ।

"ପୁଅଟିଏ, ଝିଅ ଟିଏ, ବାସ୍ ।"

ଖାଇବା ଶେଷ ହେଲା । ଡା. ଦାସ ବାହାରିବା ପାଇଁ ତତ୍ପର ହେଇ ଉଠିଲେ ।

"ମୁଁ ଏଥର ଚାଲିଯାଇ ପାରିବି । ଆପଣଙ୍କ ଆତିଥ୍ୟ ପାଇଁ ବହୁତ ବହୁତ ଧନ୍ୟବାଦ ।"

" ଏତେ ରାତିରେ ଏକା ଏକା ଯାଇ ପାରିବେ ? ଡର ଲାଗିବନି ? ତା' ଛଡା ବର୍ଷା ପବନ ତ ପୁଣି ଆରମ୍ଭ ହେବାକୁ ଲାଗିଲାଣି ।"

" ଯେତେ ଅସୁବିଧା ହେଲେ ମଧ ମୋତେ ଯିବାକୁ ହେବ ।"

" ଆପଣଙ୍କ ସହିତ ଏତେ ପରିଚୟ ହେଲା, ଆମ ଘର ଟିକିଏ ବୁଲି ଦେଖିବେନି ? ଭିତରକୁ ଆସନ୍ତୁ ନା ।" ଡ୍ରେସିଂ ଟେବୁଲ୍‌ର ଆଇନା ସାମନାରେ ଛିଡା ହୋଇ ନିଜର ଉତ୍କଣ୍ଠାକୁ ଚାପି ରଖିବାକୁ ପ୍ରବଳ ଚେଷ୍ଟା କରୁଥିଲେ ମିସେସ୍ ମିଶ୍ର ।

ଭିତରକୁ ଯାଇ ବେଡରୁମର ସାଜସଜ୍ଜାକୁ ବେଶ୍ ଉପଭୋଗ କରୁଥିଲେ ଡା. ଦାସ । "ଖୁବ୍ ଭଲ ହୋଇଛି । ଆପଣଙ୍କ ପସନ୍ଦକୁ ତାରିଫ୍ ନ କରି ରହି ପାରୁନି । ଅଁଲ କେବେ ଆସିଲେ ଆପଣଙ୍କ ବାବୁଙ୍କ ସହିତ ଆଳାପ କରିବା । ଆପଣମାନେ କିଛି ଗୋଟାଏ ସିଦ୍ଧାନ୍ତ ନେଇ ମତେ ଖବର କରିବେ । ମୁଁ ସୁବପ୍ରକାର ଚେଷ୍ଟା କରିବି ଆପଣଙ୍କୁ ସାହାଯ୍ୟ କରିବା ପାଇଁ ।"

ମିସେସ୍ ମିଶ୍ରଙ୍କ ଉର୍ଦ୍ଧ୍ୱଶ୍ୱାସ ଉଠୁଥିଲା । ହଠାତ୍ ସେ ଡା. ଦାସ ଙ୍କ ହାତକୁ ଭିଡିଧରି ବେଡ ଉପରେ ବସାଇ ଦେଲେ । ଲ୍ୟାମ୍ପଟି ସେ ଲିଭାଇ ଦେଇ ସାରିଥିଲେ ସେତେବେଳକୁ ।

" ଆର୍ଟିଫିସିଆଲ ଇନ୍‌ସେମିନେସିନ୍ ଆଜି ହେବ, ଏଇ ମୁହୂର୍ତ୍ତରେ । " ମିସେସ୍ ମିଶ୍ରଙ୍କ କଣ୍ଠରେ ଦୃଢତା ଭରି ରହିଥିଲା ।

" ଦେଖନ୍ତୁ ମିସେସ୍ ମିଶ୍ର, ଆପଣ ଇଏ କ'ଣ କରୁଛନ୍ତି ? ଆର୍ଟିଫିସିଆଲ୍ ଇନ୍‌ସେମିସନ୍ ଏମିତି ହୁଏନାହିଁ ।" ଡା. ଦାସଙ୍କ କଣ୍ଠ ଥରୁଥିଲା ।

"କେମିତି ହୁଏ ମୁଁ ଭଲକରି ବୁଝିସାରିଛି । ମୋର ପିରିୟଡ୍ ହେବାର ଆଜିକୁ ଠିକ୍ ଚଉଦ ଦିନ । ଆପଣଙ୍କ ସାହାଯ୍ୟ ପାଇଁ ମୁଁ ଆପଣଙ୍କ ନିକଟରେ ଚିରକୃତଜ୍ଞ ରହିବି । କ'ଣ ମୋର ଏଇ ଛୋଟିଆ ଅନୁରୋଧ ରଖିବେନି ।" କଣ୍ଠରେ ତାଙ୍କର ଆବେଗ ଭରିରହିଥିଲା ।

କିଂ କର୍ତ୍ତବ୍ୟ ବିମୁଢ ହୋଇ ବେଡ୍ ଉପରେ ପଡିରହିଥିଲେ ଡା. ଦାସ । ବାହାରର ଝଡ ସହିତ ତାଳଦେଇ ତାଙ୍କଭିତରେ ଝଡ ତିବ୍ର ଗତିରେ ବହିଚାଲିଥିଲା । ପ୍ରଖର ଶ୍ୱାସ ପ୍ରଶ୍ୱାସ ଭିତରେ ଦୁହେଁ କିଛି ସମୟ ପାଇଁ ବେଶ ସକ୍ରୀୟ ହୋଇ ଉଠିଥିଲେ ।

ପରଦିନ ସକାଳେ ଡା. ଦାସ ବିଦାୟ ନେଇ ଫେରିବା ବେଳେ ମିସେସ୍ ମିଶ୍ରଙ୍କର ଏକାନ୍ତ ଅନୁରୋଧ ଥିଲା, ଜୀବନରେ କେବେବି କୌଣସି ପରିସ୍ଥିତିରେ ପୁଣି ତାଙ୍କ ସହିତ ଡା. ଦାସଙ୍କର ସାକ୍ଷାତ ଯେପରି ନହୁଏ । ତାଙ୍କ ଅନୁରୋଧକୁ ଡା. ଦାସ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ସେ ଅଭୁଲା ସ୍ମୃତିକୁ ଭୁଲିବାକୁ ଚେଷ୍ଟା କରି ।

"ସାର, ମା' ବେହୋସ୍ ହୋଇଯାଇଛନ୍ତି । ଜଲ୍‌ଦି ଆସନ୍ତୁ । " ଡ୍ରାଇଭରର ବ୍ୟସ୍ତତା ଭରା ଡାକରେ ଡା. ଦାସଙ୍କ ମୋହ ଭଙ୍ଗ ହେଲା ।

ଗାଡି ଭିତରକୁ ଉଠିଯାଇ ମିସେସ୍ ମିଶ୍ରଙ୍କର ପ୍ରତିଟି ତନ୍ତ୍ରୀକୁ ଏକାଗ୍ରତାର ସହ ପରୀକ୍ଷା କରିବାକୁ ଲାଗିଲେ ଡା. ଦାସ । ସେଇ ସୁଶ୍ରୀ ତନୁ, ସେଇ କମନୀୟ ମୁଖ ମଣ୍ଡଳ, ସେଇ ମାଦକତା ଭରା ନୟନ ଯୁଗଳ । ସବୁ କିଛି ଠିକ୍ ଥିଲା । କେବଳ ନଥିଲା ହୃଦ୍ ପିଣ୍ଡରେ ସ୍ପନ୍ଦନ, ସ୍ନାୟୁରେ ସଚେତନତା ।

ଡା. ଦାସ ଅନୁଭବ କରୁଥିଲେ ତାଙ୍କ ପାଦତଳର ପୃଥିବୀ ଭୁଷୁଡି ପଡିବାକୁ ଉପକ୍ରମ କରିଛି ଏବଂ ବେକରେ ଝୁଲୁଥିବା ଷ୍ଟେଥୋସ୍କୋପ୍ ନାଗସାପ ସାଜି ତାଙ୍କୁ ସହସ୍ର ଦଂଶନ କରୁଛି । ଅସହାୟ ଆଖିରେ ଆଖିଏ ଲୁହ ମାଖି ସେ ଚାହିଁ ରହିଥିଲେ ନିଳ ଆକାଶର ଭସା ବାଦଲ ସନ୍ଧିରେ ଲୁଚି ଯାଉଥିବା ଅସ୍ତଗାମୀ ସୂର୍ଯ୍ୟକୁ ।

# କାଲୁ ମିଆଁ

**ସ**କାଳୁ ସକାଳୁ ତରବରିଆ ନିତ୍ୟକର୍ମ ଶେଷକରି ବେଲାଏ ପଖାଳ ଆଉ କିଛି ତେନ୍ତୁଳି ଖଟାର ଚଉକଷିଆ ଭୋଜନଟିଏ ପକାଇ ମାନ୍ଧାତା ଅମଳର ଇଂଲିସ ମଡେଲ ସାଇକେଲଟି ଧରି ବାହାରିଲେ ଉସମାନ୍ ଖାଁ । ସାଇକେଲ୍ ହେଣ୍ଡେଲରେ ଓହଳି ଥାଏ ଏଗାର ବର୍ଷ ତଳର ଖରିଦ୍ କରା ସାତସିଆଁ ପ୍ଲାଷ୍ଟିକ ହେଣ୍ଡ୍ ବ୍ୟାଗ୍ । କିଂତୁ ବ୍ୟାଗ୍ ଭିତରେ ଭରିନହିଥାଏ ଶହେଟଙ୍କିଆ ଠାରୁ ଆରମ୍ଭ କରି ଟଙ୍କିକିଆ ପର୍ଯ୍ୟନ୍ତ ଅଲଗା ଅଲଗା ବିଡା ବନ୍ଧା ପ୍ରାୟ ବୀଇଶି ହଜାର ଟଙ୍କାର ନୋଟ ସହିତ ରଫୁକରା ପୁରୁଣା ଲୁଙ୍ଗି ଆଉ ତେଲ ପିଆ ମଇଳା ଗାମୁଛା । ଖଣ୍ଡିଏ ଏତେ ପୁରୁଣା ସିଲେଇ କରା ହେଣ୍ଡବ୍ୟାଗରେ ସବୁଦିନ ଏତେ ଗୁଡାଏ ଟଙ୍କା ନବାଆଣିବା କରିବାରେ ତା'ର ଟିକିଏ ଶଙ୍କା ନଥାଏ, ଶଙ୍କୋଚ ମଧ ନଥାଏ । ତା'ର ଯୁକ୍ତି ଯେ, ଯେଉଁ ବ୍ୟାଗ୍ ବ୍ୟବସାୟରେ ତା' ଭାଗ୍ୟ ଖୋଲି ଦେଇଛି ସେ ଖଣ୍ଡିକୁ ସେ ଏତେ ସହଜରେ ହାତ ଛଡା କରିବନାହିଁ । କୁଆଖିଆ ବଜାରରେ ତା' ମାମୁଁ ପୁଅ ଭାଇର ପାନ ଦୋକାନ କଡରେ ସାଇକେଲଟି ତାଲା ପକେଇ ବେଗ୍ ଖଣ୍ଡିକ କାଖରେ ଜାକି ବସ୍‌ଷ୍ଟାଣ୍ଡ ଆଡକୁ ମୁହେଇଁଲା । ଯୁବଶକ୍ତି ଟ୍ରେକରର କ୍ଲିନର 'ଭଦ୍ରକ' 'ଭଦ୍ରକ' ଡାକ ଛାଡିଥାଏ । ତରବରରେ ଉସ୍‌ମାନ ଉଠିଗଲା ଟ୍ରେକର ଭିତରକୁ । ଗାଡି ଷ୍ଟାର୍ଟ ଦେଲା ।

ଉସ୍‌ମାନ ଖାଁର ଘର ବ୍ରହ୍ମବରଦା । ଡାକ ନାଁ କାଲୁମିଆଁ । ବୟସ ପ୍ରାୟ ପଚାଶ ପାଖାପାଖି । କଳା ମଚମଚ ବଳିଲା ଚେହେରାକୁ ମୋଟା ନିଶ ହଳଟା ତାକୁ ବେଶ୍ ମାନେ । ଘରେ ସ୍ତ୍ରୀ ଓ ଛୋଟ ବଡ ସାତଟି ପିଲାର ସଂସାର । ବଡପୁଅ ଇସାକ୍ ଖାଁ ରଙ୍ଗଲତା ଟ୍ରେକରର ଡ୍ରାଇଭର । ଗଲା ଦି' ବର୍ଷ ତଳେ ତା'ର ବାହାଘର ହୋଇଛି । ଉସମାନ ଖାଁ ପୋଖତ ହତା ବେପାରୀ । ଦୀର୍ଘ ଏଗାର ବର୍ଷ ଧରି ଗୋରୁ ବେପାର କରି ପୋଖତ ବେପାରୀ ପାଲଟି ଗଲାଣି । ଗୋରୁ ଚିହ୍ନିବାରେ ଓସ୍ତାଦ୍ । କୌଣସି ନିଶାପାଣିର ପାଖ ମଧ ମାଡେନାହିଁ । ଭାରି ଉପକାରୀ ଲୋକଟିଏ । ତେଣୁ ସମସ୍ତେ ତାକୁ ଭଲ ପାଆନ୍ତି ।

ଉସ୍‌ମାନ କିନ୍ତୁ ଆଗରୁ ଏମିତି ନଥିଲା । ଗୋରୁ ବେପାର କରିବା ଆଗରୁ ସେ ଥିଲା ଦୁର୍ଦ୍ଧାନ୍ତ ମଣିଷ ଟିଏ । ତା' ନାଁ ଶୁଣିଲେ ଲୋକେ ଡରୁଥିଲେ । କାନ୍ଦୁଥିବା ପିଲାକୁ କାଲୁମିଆଁ ଆସିଲାଣି କହି ମା ତା'ର କାନ୍ଦ ବନ୍ଦ କରାଉଥିଲା । ଯେତେ ପ୍ରକାର ଗୁଣ୍ଡା ବଦ୍‌ମାସ୍ କାମରେ ସେ ଆଗୁଆ ଥିଲା । କିନ୍ତୁ ତା'ର ମୁଖ୍ୟ ଧନ୍ଦା ଥିଲା ମାଂସ କାଟିବା । ଦୈନିକ ଅନ୍ତତଃ ଆଠଦଶଟା ଛେଳି, କିଛି କୁକୁଡା, ବତକ ଆଉ ଗୋଟେ ଦି'ଟା ହତା ନକାଟିଲେ କାଲୁ ମିଆଁକୁ ଶାନ୍ତି ଲାଗୁନଥିଲା । ଏସବୁ ଯନ୍ତୁଙ୍କୁ ହତ୍ୟା କରିବାରେ ତା'ର ଯେ କେତେ ଆନନ୍ଦ ତା'କୁ ନଦେଖିଲେ ବିଶ୍ୱାସ କରି ହେବନାହିଁ । କୁକୁଡା ମାରିବା ବେଳେ ତା'ର କୌଣସି ଯନ୍ତ୍ର ଆବଶ୍ୟକ ପଡେ

ନାହିଁ । କୁକୁଡାର ବେକକୁ ଦି' ହାତରେ ଧରି ମୋଡି ଫଟ୍ କରି ଛିଡାଇ ଦିଏ । ଏମିତିକି ଜୀବଟିଏ ମରିବା ବେଳେ ଟିକିଏ ଶବ୍ଦ କରିବାକୁ ସମୟ କି ସୁଯୋଗ ପାଏ ନାହିଁ । କାଲୁ କହେ ଜୀବହତ୍ୟା କଲାବେଳେ ଯଦି ସିଏ ଶବ୍ଦ କଲା କି ରକ୍ତ ବୋହିଲା, ତା'ହେଲେ କି ବାହାଦୁରି ନାଁ କି ମଜା ? ବେଳେ ବେଳେ କୁକୁଡା ବେକକୁ ଗୋଟେ ଚକ୍ ଚକ୍ ଛୁରୀରେ ପଚ୍ କରି କାଟିଦିଏ । ଟୋପାଏ ରକ୍ତ ତଳେ ପଡିବା ପୂର୍ବରୁ କୁକୁଡାର ବେକକୁ ନିଜ ପାଟିରେ ଲଗାଇ ଚଁ ଚଁ କରି ରକ୍ତ ଶୋଷି ନିଏ । ଆଉ ବେଳେ ବେଳେ କୁକୁଡାର ମୁଣ୍ଡଟାକୁ ପଚ୍ କରି କାଟିଦେଇ ତା' ଗଣ୍ଡିଟାକୁ ଏତେ ଉପରକୁ ଫିଙ୍ଗି ଦିଏ ଯେ ତା'ର ଗଣ୍ଡିଟା ମାଟି ଉପରେ ଭୁସ୍ କରି ପଡିବା ଆଗରୁ ତା'ର ସବୁତକ ରକ୍ତ ଛିଞ୍ଚିହୋଇ ପଡିଥାଏ ତା'ରି ଉପରେ । ଆଉ ସେଇ ରକ୍ତରେ ହୋଲି ଖେଳିବାକୁ ତା'ର ଭାରି ସଉକ । ଛେଳି କାଟିବା ବେଳେ ତାକୁ କାଳେ ଘାସ ବୁଦାଟିଏ କାଟିବା ପରି ଲାଗେ । କେତେବେଳେ ଜବେଇ କରେ ତ କେତେବେଳେ ଏକା ଚୋଟରେ ବେକଟାକୁ ଦି' ଖଣ୍ଡ କରିଦିଏ । ବେକଟା କଟିଯିବା ପରେ ସେ ରକ୍ତକୁ ଗୋଟିଏ ବେଲାରେ ଧରିରଖି ସାଙ୍ଗେ ସାଙ୍ଗେ ପିଇଦିଏ । ବେଳେ ବେଳେ ସିଧା ତା' ବେକରେ ମୁହଁ ଲଗାଇ ରକ୍ତ ପିଇଯାଏ । ବଡ ଅଦ୍ଭୁତ ଥିଲା ତା'ର ପ୍ରକୃତି । ତା' ଭାଷାରେ ତାଜା ରକ୍ତ ନପିଇଲେ କଲିଜା ଥଣ୍ଡା ହୁଏନା । ଛେଳିର ଚମଡା ଛେଲିବା ଏବଂ ତା'ର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗକୁ ଖିନ୍ ଭିନ୍ କରି କାଟିବାରେ କାଲୁ ଖୁବ୍ ଓସ୍ତାଦ । ଏମିତିକି ଶବବ୍ୟବଚ୍ଛେଦ କରୁଥିବା ଜଣେ ଡାକ୍ତରଠାରୁ ଆହୁରି ଶିଘ୍ର ଓ ସୂକ୍ଷ୍ମ ଭାବରେ ତା'ର କାମ କରିପାରେ । ଏ ସବୁ ଥିଲା କାଲୁର ଦୈନନ୍ଦିନ ଧନ୍ଦା ।

ଦିନେ ଜରୁରୀ ଖବର ପାଇ ଦୋକାନ ବନ୍ଦ କରି କାଲୁ ତରତରରେ ଘରେ ପହଞ୍ଚିଲା । ତା' ଘରପାଖରେ ବହୁତ ଲୋକଙ୍କ ଭିଡ । କିନ୍ତୁ କାହାରି ମୁହଁରେ ଭାଷା ନାହିଁ । ଘର ଭିତରକୁ ଯାଇ ଦେଖେ ସ୍ତ୍ରୀ ତା'ର ଭୋ ଭୋ ରଡି ଛାଡି ମୁଣ୍ଡ ପିଟି କାନ୍ଦୁଛି । ତା'ର ଅଠର ବର୍ଷର ଅଭିଆଡି ଝିଅ ଯାହାକୁ ସେ ପ୍ରାଣ ଠାରୁ ଅଧିକ ଭଲ ପାଉଥିଲା, ଘର ଭିତରେ ବେକରେ ରସି ଲଗାଇ ଆତ୍ମହତ୍ୟା କରିଛି । ଝିଅଟାର ନିର୍ଜିବ ଦେହଟା ସେଇମିତି ଝୁଲୁଥାଏ, ଠିକ୍ ଯେମିତି ମୁଣ୍ଡକଟା ଛେଳିର ନିର୍ଜିବ ଦେହଟା ଝୁଲୁଥାଏ କାଲୁର ମାଂସ ଦୋକାନରେ । ସେଦିନ କାଲୁର ପିଶାଚ ମନ ଓ ରାକ୍ଷସ କଲିଜା ମଧ ଶିହିରି ଉଠିଥିଲା । ତହିଁ ପରଦିନ ଶବବ୍ୟବଚ୍ଛେଦ କରାଗଲା, ଠିକ୍ ଯେମିତି ଛେଳିର ବିଭିନ୍ନ ଅଙ୍ଗକୁ ଖିନ୍ ଭିନ୍ କରି ସେ କାଟୁଥିଲା । ସେତେବେଳେ ମଧ ସେ ଦୃଶ୍ୟ କାଲୁ ଛଳ ଛଳ ଆଖିରେ ଦେଖିଥିଲା । ଠିକ୍ ସେହି ଘଟଣା ପରଠାରୁ ଆଉ କେବେ ବି କାଲୁର ମାଂସ ଦୋକାନ ଖୋଲିନାହିଁ, ଏମିତିକି ସେ ନିଜେ ଆଇଁଷ ଖାଇବା ମଧ ଛାଡି ଦେଇଛି । ସତରେ କି ବିରାଟ ପରିବର୍ତ୍ତନ । ତା' ପରଠାରୁ ପେଟ ପୋଷିବା ପାଇଁ ସେ ଧରିଛି ଗୋରୁ ବେପାର । ବେଶ୍ ଦି ପଇସା କମାଏ ଆଉ ସୁରୁଖୁରୁରେ ଚଳିଯାଏ ।

ଟ୍ରେକର ଚାଲିଥାଏ ଜାତୀୟ ରାଜପଥରେ ଭଦ୍ରକ ଅଭିମୁଖେ । ଠିକ୍ ଖରସୁଆଁ ପୋଲ ପାଖା ପାଖି ରାସ୍ତା ଉପରେ କିଛି ଲୋକ ହୋ ହଲ୍ଲା କରୁଥିବାର ଦେଖାଗଲା । ରାସ୍ତା କଡରେ

କେତେ ଖଣ୍ଡ ଟ୍ରକ୍ ଓ ବସ୍ ଅଟକି ରହିଥାଏ । ଟ୍ରେକରଟି ସେଇଠି ବ୍ରେକ୍ କସିଲା । ମାଲ ବୋଝେଇ ଟ୍ରକଟିଏ ଓଲଟି ପଡିଥାଏ ରାସ୍ତାତଳେ । ଡ୍ରାଇଭରର ନିର୍ଜ୍ଜିବ ଦେହଟା ରାସ୍ତା କଡରେ ଚିତ୍ ହୋଇ ପଡିଥାଏ । ସଂପୂର୍ଣ୍ଣ ଦେହଟା ରକ୍ତ ଜୁତୁବୁଡୁ । ରକ୍ତର ଧାର ରାସ୍ତା ତଳ ପର୍ଯ୍ୟନ୍ତ ଲମ୍ବିଥାଏ । ଅନ୍ତଃବୁଜୁଳା ବାହାରି ଛିନ୍ ଭିନ୍ ହୋଇ ପଡିଥାଏ । ଇମ୍ବା ଜିଭଟା ବାହାରକୁ ବାହରି ଆସିଥାଏ । ବଡବଡ ଆଖିଦିଟା ତା'ର କଟ୍ ମଟ୍ ଚାହିଁ ରହିଥାଏ । ଓଃ, କି ଭୟଙ୍କର ଦୃଶ୍ୟ । ଯାତ୍ରୀମାନେ ହାୟ, ହାୟ, ଚୁ, ଚା ହେଉଥାନ୍ତି । କାଲୁମିଆଁ କିନ୍ତୁ ନିର୍ବିକାର ଭାବରେ ବସିଥାଏ । ମୁହଁରେ ଭାଷା ମଧ୍ୟ ନ ଥାଏ ।

ଟ୍ରେକରଟି ପୁଣି ଆଗଇଲା ଯାତ୍ରୀମାନଙ୍କୁ ନେଇ । ସମସ୍ତେ ନୀରବ । କିଛି ସମୟ ପରେ ଜଣେ ଚିହ୍ନା ଯାତ୍ରୀ ପଚାରିଲେ, "କାଲୁଭାଇ ! ଏ ଭଳିଆ ଘଟଣା ଦେଖି ତୁମକୁ କିଛି ଲାଗିଲା ନାହିଁ ?" ସାମାନ୍ୟ ହସି ଦେଇ କାଲୁ କହିଲା, "ଆରେ ଭାଇ ଜୀନ୍ଦେଗୀଭର୍ ଯିଏ ରକ୍ତ ମାଂସ ଆଉ ଜୀବନ ସାଙ୍ଗରେ ଖେଳି ଖେଳି ଆସିଛି, ତାକୁ ପୁଣି ଗୋଟାଏ ଲାଗିବ କ'ଣ ନାଁ ତା'ର ପୁଣି ହବ କ'ଣ ?"

ଗାଡି ଏଥର ସ୍ପିଡ୍ ନେଲା । ଶୀଘ୍ର ଭଦ୍ରକରେ ପହଞ୍ଚିବାକୁ ହବ । ବୈତରଣୀ ପୋଲ ମୁଣ୍ଡରେ ପୁଣି କିଛି ଲୋକଙ୍କ କୋଳାହଳ । ବସ ଟ୍ରକ୍ କେତେ ଖଣ୍ଡ ସେଠାରେ ମଧ୍ୟ ଅଟକିଥାଏ । ଟ୍ରେକର ପୁଣି ବ୍ରେକ୍ କସିଲା । କେତେ ଜଣ ଯାତ୍ରୀ ପାଟି କରି ଉଠିଲେ " ଆଜି କି ଭଳିଆ ଯୋଗ ଯେ ରାସ୍ତାସାରା ଖାଲି ଆକ୍ସିଡେଣ୍ଟ୍ ।" ପ୍ରାୟ ଅଧଘଣ୍ଟାଏ ଆଗରୁ ଭଦ୍ରକରୁ ପାଣି କୋଇଲି ଫେରୁଥିବା 'ରଙ୍ଗଲତା' ଟ୍ରେକର ସହିତ ଗୋଟିଏ ଟ୍ରକର ମହାଁମୁହିଁ ଧକ୍କା । ଖଣ୍ଡିଆ ଖାବରା ହୋଇଥିବା ବାର ଜଣ ଯାତ୍ରୀକୁ ଡାକ୍ତରଖାନାକୁ ପଠାଇ ଦିଆଯାଇଥାଏ । କିନ୍ତୁ ଡ୍ରାଇଭର ଇସାକ୍ ଖାଁର ନିର୍ଜ୍ଜିବ ଶରୀର ରକ୍ତ ଜୁତୁବୁଡୁ ହେଇ ଲୋଟି ପଡିଥିଲା ବିଚ୍ ରାସ୍ତା ଉପରେ । ଜଣେ ଚିହ୍ନା ଯାତ୍ରୀ ପାଟି କରି ଉଠିଲା , "ଆରେ, ଇଏତ ଆମ କାଲୁ ଭାଇର ପୁଅ । ଆଃ , ବିଚରା !" ଲୋକଟି ଛଳ ଛଳ ଆଖିରେ ଦୌଡି ଆସିଲା କାଲୁ ମିଆଁ ପାଖକୁ । କାଲୁ କିନ୍ତୁ ନିର୍ବିକାର ଭାବରେ ସେଇମିତି ଗାଡିଭିତରେ ବସିଥାଏ । ଆଖିରେ ପଲକ ନଥିଲା କି ପିଣ୍ଡରେ ପ୍ରାଣ ମଧ୍ୟ ନଥିଲା । କାଲୁ ମିଆଁର ଅତି ପ୍ରିୟ ବ୍ୟାଗ୍ ଖଣ୍ଡିକ ତା ହାତରୁ ଖସି ତଳେ ପଡିଥାଏ ।



# ବିଦଗ୍ଧ ଫଗୁଣ

ବିଗତ ଐଶ୍ୱର୍ଯ୍ୟର ସ୍ମୃତି ବହନ କରି ସହର ଉପକଣ୍ଠରେ ଦଣ୍ଡାୟମାନ ବିକ୍ରମ କେଶରୀ ରାୟ ଚୌଧୁରୀଙ୍କର ବିଶାଳକାୟ ତ୍ରିତଳ ପ୍ରାସାଦ। ପ୍ରାସାଦ ପଶ୍ଚାତ ଭାଗର ଅନତି ଦୂରରେ ପ୍ରବାହିତ ଚିରସ୍ରୋତା କଳନାଦିନୀ ଯମୁନା ନଦୀ । ସାମ୍ନାରେ ଲମ୍ବିଯାଇଛି ସୁପ୍ରସସ୍ତ ରାଜାରାସ୍ତା ।

ବୃଦ୍ଧ ବିକ୍ରମ କେଶରୀ ପ୍ରସାଦର ତୃତୀୟ ମହଲାରେ ତାଙ୍କ ଶୟନ କକ୍ଷରେ ବହୁସ୍ମୃତିର ସାକ୍ଷ୍ୟ ବହନ କରି ପଡ଼ିରହିଥିବା ହାତୀଦାନ୍ତ ଖଚିତ ପଲଙ୍କ ଉପରେ ଶୋଇରହି ଚିତ୍କାର କରି ଚାଲିଥିଲେ 'ମକରା' 'ମକରା' ବୋଲି । ତାଙ୍କ ଚିତ୍କାର କୋଠରୀର ଚାରି କାନ୍ଥ ଭିତରେ ଶବ୍ଦାୟିତ ହୋଇ ପୁଣି ଶୁନ୍‌ଶାନ୍ ହୋଇ ଯାଉଥିଲା ସିନା, କିନ୍ତୁ କୌଣସି ପ୍ରତ୍ୟୁତ୍ତର ମିଳୁନଥିଲା କିମ୍ବା ସେଠାରେ କୌଣସି ମକରାର ଆବିର୍ଭାବ ମଧ ହେଉନଥିଲା । ବାରମ୍ବାର ଚିତ୍କାର କରିବା ପରେ ବିକ୍ରମକେଶରୀଙ୍କ ବଜ୍ର ଗମ୍ଭୀର କଣ୍ଠ ସ୍ୱର କ୍ରମଶଃ କ୍ଷୀଣ ଏବଂ ବାଷ୍ପରୁଦ୍ଧ ହୋଇ ଆସୁଥିଲା । ନବେ ବର୍ଷ ବୟସରେ ପଦାର୍ପଣ କରିଥିବା ପକ୍ଷାଘାତ ରୋଗରେ ଆକ୍ରାନ୍ତ ଅକର୍ମଣ୍ୟ ବିକ୍ରମକେଶରୀଙ୍କର ଦୁଇଆଖି କୋଣ ସଜଳ ହୋଇ ଉଠିଥିଲା, ନିସ୍ତେଜ ଓଠ ଦୁଇଟି ଥରି ଉଠିଥିଲା ନୈରାଶ୍ୟ ଜନିତ ପ୍ରଚଣ୍ଡ ମାନସିକ ଆଘାତ ସହ୍ୟକରି ନ ପାରି । ଦୁଃଖ ଏବଂ ଅବଶୋଷରେ ଭାଙ୍ଗିପଡ଼ି ଅନ୍ୟପଟକୁ ମୁହଁ ବୁଲାଇ ଶୋଇବାକୁ ଚେଷ୍ଟା କରୁଥିଲେ ସେ । ବିକ୍ରମ କେଶରୀଙ୍କର ଏ ପ୍ରକାର ମାନସିକ ଯନ୍ତ୍ରଣା କିଛି ନୂଆ କଥା ନୁହେଁ । ସେ ବହୁବାର ନିଜ ମନକୁ ଶାନ୍ତ କରିବାକୁ ଚେଷ୍ଟା କରିଛନ୍ତି କିନ୍ତୁ ପାରି ନାହାନ୍ତି, ବହୁବାର ଆତ୍ମହତ୍ୟା କରିବା ପାଇଁ ଅପଚେଷ୍ଟା ମଧ କରିଛନ୍ତି କିନ୍ତୁ ସଫଳ ହୋଇପାରି ନାହାନ୍ତି । କ'ଣ ପାଇଁ ଆଉ ବଞ୍ଚିରହନ୍ତେ ଯେ ? ଜୀବନରେ ଯେତେ ଯାହା ଏ୍ୟଶ୍ୱର୍ଯ୍ୟ ଭୋଗ କରିବା କଥା ସବୁତ ଭୋଗକରି ସାରିଛନ୍ତି, ପରିପକ୍ୱ ବୟସରେ ଯେତେ ଯାହା ଦୁଃଖ, କଷ୍ଟ ଭୋଗ କରିବା କଥା ସବୁତ ସହ୍ୟ କରି ସାରିଛନ୍ତି, ଶେଷ ଜୀବନରେ ଯେତେ ଯାହା ମାନସିକ ଯନ୍ତ୍ରଣା ଅନୁଭବ କରିବା କଥା ସବୁତ ଅଙ୍ଗେ ଲିଭେଇଛନ୍ତି, ଏ ସମୟରେ ଯାହାର ସାହାରା ଟିକକ ପାଇଁ ମଣିଷ ଉହଲ ବିକଳ ହୁଏ ତାକୁ ମଧ ବହୁ ପୂର୍ବରୁ ହରେଇ ସାରିଛନ୍ତି, ଆଉ କ'ଣ ପାଇଁ ଏ ବୟସରେ ହନ୍ତସନ୍ତ ହୁଅନ୍ତେ ଯେ ?

ବୃଦ୍ଧ ବିକ୍ରମକେଶରୀ ମନେ ପକାଇବାକୁ ଚେଷ୍ଟା କରୁଥିଲେ ସେଦିନର ତାରଖ । କିନ୍ତୁ ସମଗ୍ର ଶରୀର ଉପରେ ବାର୍ଦ୍ଧକ୍ୟର ମାତ୍ରାଧିକ ତାଡ଼ନା ଯୋଗୁଁ ନାଁ ତାଙ୍କର ସ୍ମରଣଶକ୍ତି ଠିକ୍

ଭାବରେ କାମ କରୁଥିଲା, ନାଁ ଦୃଷ୍ଟିଶକ୍ତି କିମ୍ୱା ଶ୍ରବଣ ଶକ୍ତି ତାଙ୍କୁ ସାହାଯ୍ୟ କରି ପାରୁଥିଲା । ଏଇ ନିକଟରେ କେବେ ହୁଏତ ଡିସେମ୍ବର ପଚିଶ ତାରଖ ଆସିଯିବ ଯେଉଁ ଶୁଭ ମୁହୂର୍ତ୍ତକୁ ସେ କେବେ ଠାରୁ ଅପେକ୍ଷା କରି ରହିଛନ୍ତି । ତାଙ୍କର ଅତି ଆଦରର ନାତି ସୁବ୍ରତ ପଚିଶ ତାରିଖରେ ଘରେ ପହଁଚିବ ବୋଲି ଲଣ୍ଡନରୁ ଚିଠି ଲେଖି ଜଣାଇ ଦେଇଛି ମାସେ ପୂର୍ବରୁ । ବିକ୍ରମ କେଶରୀଙ୍କ ମନ ପୁଲକିତ ହୋଇ ଉଠୁଥିଲା । ତାଙ୍କ ପାକୁଆ ପାଟିକୁ ଆନ୍ଦୋଳିତ କରି ଦୁଇ ଓଠ ଫାଙ୍କ ଦେଇ ଟେନାଏ ହସଲ ଲହରୀ ଖେଳିଯିବା ସଙ୍ଗେ ସଙ୍ଗେ ଆଖିକୋଣରୁ ଦୁଇ ଟୋପା ଆନନ୍ଦାଶ୍ରୁ ମଧ ଝରି ପଡ଼ିଲା ।

ଏଇ ସେଇ ସୁବ୍ରତ, ଯାହାକୁ କାଖେଇ କୋଳେଇ ବାଲ୍ୟକାଳରୁ ଗୋଟିଏ ଭଲ ମଣିଷ କରି ସେ ଗଢ଼ି ତୋଳିଥିଲେ । ସୁବ୍ରତର ବାପା ମା' ଉଭୟେ ବଡ଼ ଅଫିସର ହୋଇଥିଲେ ହେଁ ପିତୃତ୍ୱ ଏବଂ ମାତୃତ୍ୱର ସ୍ୱାଦ ସେ ଅନୁଭବ କରିବାକୁ ସୁଯୋଗ ପାଇ ନଥିଲେ । ବୃଦ୍ଧ ବିକ୍ରମକେଶରୀ ହିଁ ଥିଲେ ତା'ର ପିତା, ମାତା, ସବୁ କିଛି । ପିତାମାତାଙ୍କୁ ଭୁଲିଯାଇ ସେ ଜେଜଙ୍କୁ ହିଁ ଆଦରି ଯାଇଥିଲା ତା'ର ଜ୍ଞାନ ଚକ୍ଷୁ ଖୋଲିବା ପୂର୍ବରୁ । ସୁବ୍ରତ ପାଇଁ ବିକ୍ରମକେଶରୀ ସ୍ନେହମୟୀ ଜନନୀ ହୋଇ ସବୁତକ ମମତା ଅଜାଡ଼ି ଦେଇଥିଲେ ତା'ରି ମୁଣ୍ଡ ଉପରେ, ଆଦର୍ଶ ପିତୃତ୍ୱର ଦର୍ପଣଟିଏ ହୋଇ ସବୁ ସମୟରେ ଉଭା ହେଉଥିଲେ ତା'ରି ସାମ୍ନାରେ, ଅନ୍ତରଙ୍ଗ ବନ୍ଧୁଟିଏ ସାଜି ସାହାଯ୍ୟ ସହଯୋଗର ସୁଦୃଢ଼ ହାତଟିଏ ଛନ୍ଦି ରଖିଥିଲେ ତା'ରି ହାତରେ, ନୀତିବାନ ଶିକ୍ଷକଟିଏ ସାଜି ନିରବଚ୍ଛିନ୍ନ ଭାବରେ ଶିକ୍ଷାଦେଇ ଚାଲିଥିଲେ ଶାସନର ଶକ୍ତ ଚାବୁକ୍‌ଟିଏ ହାତରେ ଧରି, କର୍ତ୍ତବ୍ୟଶୀଳ ଚାକରଟିଏ ସାଜି ସେବା ଶୁଶ୍ରୁଷାଠୁ ଆରମ୍ଭ କରି ପ୍ରତ୍ୟେକ କାର୍ଯ୍ୟକୁ ଠିକ୍ ସମୟରେ କରିଯାଉଥିଲେ ନିର୍ବିକାର ଭାବରେ । ସୁବ୍ରତ ବଡ଼ହୋଇ ଏ ସମାଜ ସାମ୍ନାରେ ଗୋଟିଏ ଆଦର୍ଶ ମଣିଷର ସ୍ୱରୂପ ନେଇ ବୀର ଦର୍ପରେ ଛିଡ଼ା ହେବାର ସ୍ୱପ୍ନ ତାଙ୍କୁ ବିଭୋର କରି ପକାଉଥିଲା । ସତକୁ ସତ ତାଙ୍କ ସ୍ୱପ୍ନକୁ ସାକାର କରି ସୁବ୍ରତ ଇଞ୍ଜିନିୟରିଂରେ ଫାଷ୍ଟକ୍ଲାସ ଫାଷ୍ଟହୋଇ ଯେଉଁଦିନ ତାଙ୍କ ଚରଣ ସ୍ପର୍ଶ କରି ଆଶିର୍ବାଦ ଭିକ୍ଷା କରିଥିଲା, ସେତେବେଳେ ସେ ଆନନ୍ଦରେ ଗଦ୍ ଗଦ୍ ହୋଇ ବହୁ ସମୟ ପର୍ଯ୍ୟନ୍ତ ସୁବ୍ରତକୁ ନିଜ ଛାତିରେ ଜଡ଼େଇ ଧରିଥିଲେ । ସଂସାର ଯାକର ଆଶୀର୍ବାଦ ଭଣ୍ଡାର ସତେ ଯେମିତି ଲୁହ ହୋଇ ସୁବ୍ରତର ଅବନତ ମସ୍ତକ ଉପରେ ଅଜାଡ଼ି ହୋଇପଡ଼ିଥିଲା । ତା' ପରେ ଅଳ୍ପ କେତେ ମାସ ପରେ ସୁବ୍ରତକୁ ଲଣ୍ଡନରେ ଚାକିରୀ ମିଳିଗଲା । ଘରୁ ବିଦାୟନେଇ ଲଣ୍ଡନ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ସେ ବିକ୍ରମକେଶରୀଙ୍କ ପାଦ ଧୂଳି ମୁଣ୍ଡରେ ମାରି ଆଶିର୍ବାଦ ଭିକ୍ଷା କରିଥିଲା ।

''ତମର ଋଣ ମୁଁ ଜୀବନ ସାରା ଶୁଝିପାରିବି ନାହିଁ ଜେଜେ । କୁହ, ମୁଁ ଲଣ୍ଡନରୁ ଫେରିଲା ବେଳକୁ ତମ ପାଇଁ କ'ଣ ଆଣିଲେ ତମେ ଖୁସି ହେବ ?''

''ମୋ ପାଇଁ ଗୋଟାଏ ବିଲାତି ନାତୁଣୀ ବୋହୂ ନେଇ ଆସିବୁ ।'' ବିକ୍ରମକେଶରୀଙ୍କ ପାକୁଆ ପାଟିରେ ହସର ଲହରୀ ଖେଳୁଥିଲା ।

ତାଙ୍କର ସେଦିନର ଥଟ୍ଟାମଜା କଥା ହୁଏତ ଆଜି ସତ ହେବାକୁ ଯାଉଛି । ସୁବ୍ରତ ଲେଖିଛି ସେ ତାଙ୍କ ପାଇଁ ଗୋଟାଏ ବିଲାତି ନାତୁଣୀ ବୋହୂ ସାଙ୍ଗରେ ନେଇ ଆସୁଛି । ସତରେ ଯଦି ଟୋକାଟା ବିଲାତି ଝିଅଟାଏ ବାହାହୋଇ ପଳାଇଆସେ, ତା' ହେଲେ ତ ସର୍ବନାଶ ହେଲା । ସୁବ୍ରତର ବାପା, ମା' ଯେଉଁ ମିଜାଜ୍‌ର ମଣିଷ ସେମାନେ କ'ଣ ବୋହୂଟାକୁ ସହଜରେ ଗ୍ରହଣ କରିବେ । କିନ୍ତୁ ସୁବ୍ରତ ପରି ଦାୟୀତ୍ୱ ସମ୍ପନ୍ନ ପିଲା ତା' ମନ ପସନ୍ଦର ଝିଅଟିଏ ବାଛିବାରେ କେବେ ହେଲେ ତ୍ରୁଟି କରି ନଥିବ । ତା' ଛଡ଼ା ସବୁ ମଣିଷ ଦେହରେ ଏକା ପ୍ରକାର ରକ୍ତ ପ୍ରବାହିତ ହେଉଥିବା ବେଳେ ମଣିଷ ମଣିଷ ଭିତ୍‌ରେ ଦେଶୀ-ବିଦେଶୀ, ଜାତି-ଅଜାତି, କଳା-ଗୋରା ଭେଦଭାବର ପ୍ରାଚୀର ଛିଡ଼ାକରିବା ଆଦୌ ଯୁକ୍ତି ସମ୍ମତ ନୁହେଁ । ସୁବ୍ରତର ପିତା ମାତାଙ୍କର ଅପରିପକ୍ୱ ଦୃଷ୍ଟି ଭଙ୍ଗୀ ପ୍ରତି ପ୍ରଚଣ୍ଡ ବିରକ୍ତି ସହ ଦୀର୍ଘ ନିଶ୍ୱାସ ଟିଏ ଟାଣି ଚିତ୍ ହୋଇ ଶୋଇବାକୁ ଚେଷ୍ଟା କଲେ ବିକ୍ରମକେଶରୀ । ଦୁଶ୍ଚିନ୍ତା ରାକ୍ଷସ କବଳରୁ ମୁକ୍ତି ପାଇବା ପାଇଁ ଗରମ ଚା' କପ୍‌ଟିଏ ହୁଏତ କିଛିଟା ସାହାଯ୍ୟ କରିପାରେ ବୋଲି ତାଙ୍କର ହୃଦ୍‌ବୋଧ ହେଲା । ତାଙ୍କର ଏକାନ୍ତ ବିଶ୍ୱାସର ପାତ୍ର, ଅସମୟର ସହାୟକ, ସବୁ ଯନ୍ତ୍ରଣାର ଜୀବନ୍ତ ସାକ୍ଷୀ ସେହି ମକରାକୁ ପୁଣି ଡାକିବାକୁ ଚେଷ୍ଟାକଲେ । 'ମକରା' 'ମକରା' ଧ୍ୱନି ପୁଣିଥରେ କୋଠରୀଟିକୁ ଶବ୍ଦାୟୀତ କରି କ୍ରମଶଃ କ୍ଷୀଣ ହୋଇଗଲା । ଏଥର କିନ୍ତୁ ବିକ୍ରମକେଶରୀଙ୍କୁ ନିରାଶ ହେବାକୁ ପଡ଼ିନଥିଲା । ଧଇଁ ସଇଁ ହୋଇ ମକରା ପ୍ରବେଶ କଲା କୋଠରୀ ଭିତରେ ।

''କ'ଣ ହେଲା ବଡ଼ ବାବୁ ?'' ନମ୍ର ଭାବରେ ପ୍ରଶ୍ନକଲା ମକରା ।

''ଆଜି କ'ଣ ଚା' କପେ ମିଳିବ ନାହିଁ ?''

''ଆଜି ପରା ଡିସେମ୍ବର ପଚିଶ ତାରିଖ । ସାନବାବୁ ଆଉ ଅଳ୍ପ ସମୟ ଭିତରେ ଆସି ପହଞ୍ଚିବେ । ନୂଆ ବୋହୂ ମା' ସାଙ୍ଗରେ ଆସୁଛନ୍ତି । ତାଙ୍କ ପାଇଁ ଜିନିଷ ପତ୍ର ଆଣିବାକୁ ବଜାର ଯାଇଥିଲି । ସେଇଥିପାଇଁ ଚା' ଦେବା ଟିକିଏ ଡେରି ହୋଇଗଲା । ମୁଁ ସାଙ୍ଗେ ସାଙ୍ଗେ ଚା' ନେଇ ଆସୁଛି ।'' ମକରା ଖୁସିରେ ଗଦ୍ ଗଦ୍ ହୋଇ ଚା' ତିଆରି କରିବାକୁ କ୍ଷିପ୍ର ଗତିରେ ରୋଷେଇ ଘର ଆଡ଼କୁ ମୁହାଁଇଲା ।

ହଠାତ୍ ବୃଦ୍ଧ ବିକ୍ରମକେଶରୀଙ୍କ ଶରୀରରେ ରୋମାଞ୍ଚ ସୃଷ୍ଟି ହେବାକୁ ଲାଗିଲା । ଯେଉଁ ପବିତ୍ର ଲଗ୍ନକୁ ଅପେକ୍ଷା କରି ସେ ମୃତ୍ୟୁ ସହିତ ବାରମ୍ବାର ସଂଗ୍ରାମ କରି ଆସିଛନ୍ତି, ସମସ୍ତ ଶାରୀରିକ ଯନ୍ତ୍ରଣାକୁ ହସି ହସି ସହ୍ୟ କରି ନେଇଛନ୍ତି, ପ୍ରଚଣ୍ଡ ମାନସିକ ଅଶାନ୍ତିକୁ ଦି' ଟୋପା ଲୁହରେ ରୂପାନ୍ତରିତ କରି ମନ ଭିତରୁ ନିଗାଡ଼ି ଚାଲିଛନ୍ତି ପ୍ରତି ମୁହୂର୍ତ୍ତରେ, ସେହି ଲଗ୍ନ ହୁଏତ ପରିଚିତ ଅତିଥିଟିଏ ସାଜି ଅଳ୍ପ ସମୟ ପରେ ତାଙ୍କରି ଦରଜାରେ ପ୍ରଥମେ କରାଘାତ କରିବ । କିଭଳି ଭାବରେ ସେ ତାଙ୍କର ଅତି ଆଦରର ସୁବ୍ରତକୁ ଏବଂ ଅତି ସୁକୁମାରୀ ଶ୍ୱେତାଙ୍ଗୀ ନାତୁଣୀ ବୋହୂକୁ ସ୍ୱାଗତ କରିବେ, ସେଥିପାଇଁ ଅଥୟ ହୋଇଉଠୁଥିଲେ । ଏଥର କିନ୍ତୁ ସେ ସୁବ୍ରତକୁ ତାଙ୍କର ପାଦ ଛୁଇଁ ପ୍ରଣାମ କରିବାକୁ ଦେବେନାହିଁ ବୋଲି ସ୍ଥିର କରି ନେଲେ । ସୁବ୍ରତ ଗୋଟାଏ କେଡ଼େ ବଡ଼ ଇଞ୍ଜିନିୟର ହୋଇଗଲାଣି । ତା'ର ସମ୍ମାନ, ପ୍ରତିପତ୍ତି କେତେ ଉଚ୍ଚରେ । ପାଦ ଛୁଇଁ ପ୍ରଣାମ କରିବାଟା ଠିକ୍ ହେବ ନାହିଁ । ସୁବ୍ରତ ତାଙ୍କର ପାଦ ଛୁଇଁବା ପୂର୍ବରୁ ସେ ତାକୁ ମାଟି ଉପରୁ ଶୂନ୍ୟକୁ ଟେକି ନେଇ ଘରସାରା ନାଚି ଯିବେ ପ୍ରଥମେ । ଜରାଜୀର୍ଣ୍ଣ, ପକ୍ଷାଘାତ ରୋଗଗ୍ରସ୍ତ ବିକ୍ରମକେଶରୀ ସେତେବେଳେ ଭୁଲି ଯାଇଥିଲେ ଯେ ସେ ନିଜେ ଶଯ୍ୟାଶାୟୀ ଏବଂ ସେ ଦିନର ବାଳକ ସୁବ୍ରତ ଆଜି ଗୋଟାଏ ଉତ୍ତମ ସ୍ୱାସ୍ଥ୍ୟବାନ୍ ଯୁବକ । ଅଧା ଆଉଜା କବାଟରେ ଠକ୍ ଠକ୍ କରାଘାତ ହେଲା । ବିକ୍ରମକେଶରୀ ଚଞ୍ଚଳମନ ହୋଇ ବସିବାକୁ ଚେଷ୍ଟାକଲେ । ହାତରେ ଚା' ଟ୍ରେ ଧରି ପ୍ରବେଶ କଲା ମକରା । ବାହାରେ ଗେଟ୍ ପାଖରେ ଗୋଟାଏ କାର୍‌ର ହର୍ଣ୍ଣ ଶୁଭିଲା ଠିକ୍ ସେତିକିବେଳେ ।

"ବାବୁ, ଗୋଟାଏ କାର୍ ଶବ୍ଦ ଶୁଭୁଛି । ସାନ ବାବୁ ଆଉ ବୋହୂମା' ଆସିଗଲେ ବୋଧହୁଏ ।" ଚା' କପ୍‌ଟା ଥୋଇ ଦେଇ ତର ତର ହୋଇ ତଳକୁ ଓହ୍ଲାଇ ଗଲା ମକରା । ଆନନ୍ଦରେ ତା' ଗୋଡ଼ ତଳେ ଲାଗୁନଥିଲା ।

ବିକ୍ରମକେଶରୀଙ୍କ ହୃଦୟର ସ୍ପନ୍ଦନ ହଠାତ୍ ବଢ଼ିବାକୁ ଲାଗିଲା । ପଲଙ୍କ ବାଡ଼କୁ ଆଉଜି ବସି ଥର ଥର ହାତରେ ଗରମ ଚା' କପ୍‌ଟିକୁ ଖୁବ୍ ଶୀଘ୍ର ପିଇ ଶେଷ କରିଦେବାକୁ ଚେଷ୍ଟାକଲେ । କାର୍‌ରୁ ଓହ୍ଲାଇବା ମାତ୍ରେ ସୁବ୍ରତ ତାଙ୍କୁ ହିଁ ଭେଟିବାକୁ ସିଧାସଳଖ ଦୌଡ଼ିଆସିବ । ଅନ୍ତତଃ ସେ ଏ କୋଠରୀ ଭିତରେ ପହଞ୍ଚିବା ପୂର୍ବରୁ ଚା' ପର୍ବଟା ଶେଷ ହୋଇଯିବା ଉଚିତ୍ । ଖାଲି କପ୍‌ଟିକୁ ତଳେ ରଖିଦେଇ ସଜାଡ଼ି ହୋଇ ବସିବାକୁ ଚେଷ୍ଟା କଲେ ବିକ୍ରମ କେଶରୀ । ପ୍ରତିଟି ମୁହୂର୍ତ୍ତ ତାଙ୍କ ପାଇଁ ମାନସିକ ଉତ୍ତେଜନା ବହନ କରି ଅତିକ୍ରାନ୍ତ ହେଉଥାଏ । ମିନିଟ୍ ପରେ ମିନିଟ୍ ଅତିକ୍ରମ କରି କାନ୍ଥ ଘଣ୍ଟାର କଣ୍ଟା ମଧ୍ୟ ଦୌଡ଼ିବାକୁ ଲାଗିଥାଏ । ଘଣ୍ଟାକୁ ଲକ୍ଷ୍ୟ କରି ତାଙ୍କର ଧୈର୍ଯ୍ୟଚ୍ୟୁତି ହେବାକୁ ବସିଲାଣି । ଚା' କପ୍‌ଟା ଦେଇଯିବା ପରଠୁ ଯା ଭିତରେ ଅଧଘଣ୍ଟାରୁ ଅଧିକ ସମୟ ବିତିଗଲାଣି,

ଅଥଚ ନା ସୁବ୍ରତ ଆସୁଛି, ନା ମକରା କୌଣସି ଖବର ନେଇ ଫେରୁଛି । ଯେଉଁ କାର୍‌ଟା ଆସିଲା ସେଥିରେ ସୁବ୍ରତ ନ ଆସି କ'ଣ ଅନ୍ୟ କେହି ଆସିଲା ? ସୁବ୍ରତ ପ୍ରଥମେ ତାଙ୍କୁ ନ ଭେଟି ଅନ୍ୟ କାହାକୁ ଭେଟିବାକୁ ଚାଲିଯାଇ ପାରିବ ଏ କଥାକୁ ମଧ ସେ ସହଜରେ ଗ୍ରହଣ କରିପାରୁ ନ ଥିଲେ । ତା' ହେଲେ ଏ ଅହେତୁକ ବିଳମ୍ବର କାରଣ କ'ଣ ହୋଇପାରେ ? ବଦ୍‌ମାସ ମକରା କିଭଳି ଦାୟିତ୍ୱହୀନ ଲୋକଟାଏ କେଜାଣି ! କିଛି ଖବର ନ ଦେଇ କୁଆଡ଼େ ଯେ ଅନ୍ତର୍ଦ୍ଧାନ ହୋଇଗଲା ? ଓଃ, ଅତି ଅସହ୍ୟ ଏ ପ୍ରତୀକ୍ଷାର ମୁହୂର୍ତ୍ତ ଗୁଡ଼ାକ । ଏ ପରିସ୍ଥିତିରେ ନିଜର ଅକର୍ମଣ୍ୟତା ପାଇଁ ମନେ ମନେ ଈଶ୍ୱରଙ୍କୁ ଖୁବ୍ ଗାଳି ଦେବାକୁ ଲାଗିଲେ ସେ । ବିକ୍ରମ କେଶରୀଙ୍କ ମାନସିକ ଉଦ୍‌ବେଗ ତା'ଙ୍କୁ ଅତିମାତ୍ରାରେ ଅସ୍ଥିର କରିବାକୁ ଲାଗିଲା । ସେ ପୁଣି ଥରେ 'ମକରା' 'ମକରା' ଚିତ୍କାର କରିବାକୁ ଲାଗିଲେ । ବିକ୍ରମ କେଶରୀଙ୍କର ସକଳ ସମ୍ଭାବନାର ରୂପେଲି ପର୍ଦ୍ଦା ଉନ୍ମୋଚନ କରି ହଠାତ୍ ସେ କୋଠରୀ ଭିତରେ ମକରାର ଆବିର୍ଭାବ ହେଲା । କିଛି ସମୟ ପୂର୍ବରୁ ଆନନ୍ଦରେ ଅଧୀର ହୋଇ ଉଠୁଥିବା ମକରା ଭୋ ଭୋ କରି କାନ୍ଦି ଦରଜା କବାଟରେ ମୁଣ୍ଡଟାକୁ ପିଟୁଥିଲା । ମକରାର ସଯତ୍ନ ଟେରୀ ଭଙ୍ଗୀ କେଶରାଶି ଅଲୁଳାୟିତ, ତା'ର କଜଳମଖା ଆଖିଦୁଇଟା ଫୁଲିଲା ଫୁଲିଲା, ସେ ପିନ୍ଧିଥିବା ଗଞ୍ଜିଟିର ସାମ୍ନାପଟ ଲୁହ ଜୁବୁଜୁବୁ ।

"କ'ଣ ହୋଇଛି ମକରା ?" ବିକ୍ରମକେଶରୀଙ୍କ ଉତ୍କଣ୍ଠା ବଢ଼ିବା ସଙ୍ଗେ ସଙ୍ଗେ ହୃତ୍‌ସ୍ପନ୍ଦନ ଦ୍ରୁତରୁ ଦ୍ରୁତତର ହେବାକୁ ଲାଗିଲା ।

"ସାନ ବାବୁ ଆଉ ବୋହୂ ମା' ଏ ସଂସାରରେ ନାହାନ୍ତି ବଡ଼ ବାବୁ । ଗାଡ଼ି ଆକ୍‌ସିଡେଣ୍ଟରେ ବି' ଜଣ ଯାକ ଚାପା ପଡ଼ି ଶେଷ ହୋଇଯାଇଛନ୍ତି । ତାଙ୍କ ଲାସ୍‌କୁ ନେଇ ଏ କାରଟା ..." କୋହ ସମ୍ବରଣ କରି ନ ପାରି ମକରା ମୁହଁରେ ହାତ ଚାପି ଧରି କୋଠରୀ ବାହାରକୁ ଚାଲିଗଲା ।

ନିର୍ବାକ ବିକ୍ରମ କେଶରୀ ହାତୀଦାନ୍ତ ଖଚିତ ପଲଙ୍କ ବାଡ଼କୁ ଆଉଜି ବସି ରହିଥିଲେ ଅପଲକ ନୟନରେ କୋଠରୀର ଦରଜା ଆଡ଼କୁ ଲକ୍ଷ୍ୟ କରି । ସେତେବେଳେ ତାଙ୍କ ମନରେ ତଥାକଥିତ ଉଦ୍ଦିପନା ନ ଥିଲା, ହୃଦୟରେ ବହୁ ପ୍ରତିକ୍ଷିତ ଆବେଗ ନ ଥିଲା କିମ୍ବା ହୃଦ୍ ପିଣ୍ଡରେ ଚିରାଚରିତ ସ୍ପନ୍ଦନ ନ ଥିଲା । ତାଙ୍କର ବିସ୍ଫାରିତ ଚକ୍ଷୁଦ୍ୱୟ ସୁଦୂର ଦିଗ୍‌ବଳୟ ଉପରେ ନିବଦ୍ଧ ଥିଲା ।



# ଦଗ୍ଧ ମଧୁବନ

ପରିଚିତ କଣ୍ଠସ୍ୱର ଶୁଣି ପଣ୍ଡିତଙ୍କ ମୋହଭଙ୍ଗ ହେଲା । ପଣ୍ଡିତେ ଏପଟ ସେପଟ ଚାହିଁଲେ । ବସ୍‌ର ସବୁଗୁଡ଼ିକ ସିଟ୍ ଯାତ୍ରୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ତାଙ୍କ ସହିତ ଆହୁରି ଅନେକ ସହଯାତ୍ରୀ ତଥାପି ଛିଡ଼ା ହୋଇ ରହିଥାନ୍ତି । ଅନତି ଦୂରରେ କଟକର ଓ.ଏମ୍.ପି. ଛକ । ଘଣ୍ଟା ଘଣ୍ଟା ଧରି ଛିଡ଼ା ହୋଇ ଆସିଥିବାରୁ ସେତେବେଳକୁ ପଣ୍ଡିତଙ୍କ ଅଣ୍ଟାବିନ୍ଧା ଆରମ୍ଭ ହୋଇ ଯାଇଥାଏ ।

"ନମସ୍କାର ସାର । " ପଛ ସିଟ୍‌ରେ ବସିଥିବା ଯୁବକଟି ଛିଡ଼ାହୋଇ ନମସ୍କାର କରୁଥିଲା ପଣ୍ଡିତଙ୍କୁ ।

"କୁଆଡ଼େ ଯିବେ ସାର୍ ?" ଯୁବକଟି ପୁଣି ପ୍ରଶ୍ନ କଲା ।

"କଟକ ଯିବା ।" ପଛକୁ ଚାହିଁ ଉତ୍ତର ଦେଲେ ପଣ୍ଡିତେ ।

"ଆସନ୍ତୁ ସାର୍, ଏଇ ସିଟ୍‌ରେ ବସନ୍ତୁ ।" ଯୁବକଟି ସିଟ୍ ଛାଡି ଦେଇ ବସ୍‌ର ଗେଟ୍ ପାଖକୁ ବାହାରି ଆସଲା । ସେତେବେଳକୁ ବସ୍‌ଟି ଓ. ଏମ୍. ପି. ଛକରେ ଅଟକି ସାରିଥାଏ । ଯୁବକଟି ତରତରରେ ଓହ୍ଲାଇ ଗଲା ବସରୁ । ବସ୍ ଚାଲିଲା ଆଗକୁ ଆଗକୁ । ପଣ୍ଡିତେ ମନେ ପକାଇବାକୁ ଚେଷ୍ଟା କରୁଥାନ୍ତି ସେ ଦୟାବାନ ଯୁବକଟିର ଚେହେରା ଓ ପରିଚୟ । ପରିଷ୍କାର ଭାବରେ ତା'କୁ ଟିକିଏ ଦେଖି ପାରିଲେ ନାହିଁ କି ଚିହ୍ନି ପାରିଲେ ନାହିଁ ।

ପଣ୍ଡିତ ମଦନ ମୋହନ ମହାପାତ୍ରଙ୍କୁ ଶ୍ରଦ୍ଧାରେ ଲୋକେ ମଦନ ପଣ୍ଡିତେ ବୋଲି ଡାକନ୍ତି । ଦୀର୍ଘ ୩୨ ବର୍ଷର ଶିକ୍ଷକତା ପରେ ଗତ ସାତ ବର୍ଷ ଧରି ଅବସର ଜୀବନ ଯାପନ କରିଆସୁଛନ୍ତି ମଦନ ପଣ୍ଡିତେ । ଶିକ୍ଷକତା କରୁଥିବା ସମୟରେ ସ୍କୁଲରେ ବେଶ୍ ଖାତିର ଥିଲା ପଣ୍ଡିତ ମହାଶୟଙ୍କର । ସହକର୍ମୀ ଶିକ୍ଷକମାନେ ପଣ୍ଡିତଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ ତାଙ୍କର ବୟସ ଏବଂ ବିଚକ୍ଷଣତା ଦୃଷ୍ଟି କୋଣରୁ । ମଦନ ପଣ୍ଡିତଙ୍କ ସହିତ ପରାମର୍ଶ ନ କରି ପ୍ରଧାନ ଶିକ୍ଷକ ମଧ କୌଣସି ନିଷ୍ପତ୍ତି ନେଇପାରୁ ନଥିଲେ । ସ୍କୁଲ ମ୍ୟାନେଜିଂ କମିଟିରେ ପଣ୍ଡିତେ ଥିଲେ ଶିକ୍ଷକ ପ୍ରତିନିଧି । ପଣ୍ଡିତେ ଆସୁଛନ୍ତି ଶୁଣିଲେ ସ୍କୁଲରେ ପିଲାଙ୍କ ପିଳେହି ପାଣି ହୋଇଯାଉଥିଲା । ମୋଟାମୋଟି ଭାବରେ ସ୍କୁଲର ପ୍ରତ୍ୟେକ କାର୍ଯ୍ୟରେ ଆଧିପତ୍ୟ ବିସ୍ତାର କରିଆସୁଥିଲେ ପଣ୍ଡିତେ । ରୂପରେ, ଗୁଣରେ, ବିଦ୍ୟାରେ, ବୁଦ୍ଧିରେ ପଣ୍ଡିତଙ୍କ ସମକକ୍ଷ ଶିକ୍ଷକ ବିରଳ ଥିଲେ । ଏବେ କିନ୍ତୁ ପଣ୍ଡିତଙ୍କ ବୟସ ଅତିକ୍ରାନ୍ତ ହୋଇ ଯାଇଛି । ସେ ମିଜାଜ୍ ନାହିଁ କି ପ୍ରତିପତ୍ତି ମଧ ନାହିଁ । ତାଙ୍କୁ ସବୁଠୁ ବେଶୀ ଅସୁବିଧାରେ ପକାଇଛି ମୋତିଆବିନ୍ଦୁ ଜନିତ ଦୃଷ୍ଟିଶକ୍ତି ହ୍ରାସ । ଏବେ ଚିହ୍ନା ଲୋକମାନଙ୍କୁ ମଧ ଚିହ୍ନିବା କଷ୍ଟକର ହୋଇପଡ଼ୁଛି ।

ଅତିକ୍ରାନ୍ତ ବୟସରେ ଭଦ୍ରକଠାରୁ କଟକ ପର୍ଯ୍ୟନ୍ତ ଦୀର୍ଘପଥ ବସ୍‌ର ଭିଡ ଭିତରେ ଛିଡ଼ା ହୋଇ ଆସିଥିବା ମଦନ ପଣ୍ଡିତେ ଥକ୍କା ମେଣ୍ଟାଇବା ପାଇଁ ଆଉ କିଛି ଚିନ୍ତା କରିବା ପୂର୍ବରୁ ତାଙ୍କ ଉଦ୍ଦେଶ୍ୟରେ ଖାଲି କରାଯାଇଥିବା ସିଟ୍‌ଟିକୁ ଦଖଲ କରି ନେଇଥିଲେ । ଆଗପଛ ଏବଂ ଉଭୟ ପାର୍ଶ୍ୱରେ ବସିଥିବା ସହଯାତ୍ରୀମାନଙ୍କ ଉପରେ ଅସ୍ୱଷ୍ଟ ନଜର ବୁଲାଇ ଆଣି ଗୋଟିଏ ଦୀର୍ଘଶ୍ୱାସ ଛାଡିଲେ ଏବଂ ସେହି ଦୀର୍ଘଶ୍ୱାସ ଭିତରେ ଘଣ୍ଟା ଘଣ୍ଟା ଧରି ଛିଡା ହୋଇ ଆସିଥିବାର କ୍ଲାନ୍ତି ଦୂର କରିବାକୁ ଚେଷ୍ଟା କରୁଥିଲେ । ବସ୍‌ଟି ଧକେଇ ଧକେଇ ଆଗଭେ ଚାଲିଥାଏ ବାଦାମବାଡି ଅଭିମୁଖେ । ସେତେବେଳକୁ ବସ୍‌ରେ ଆଉ କୌଣସି ଷ୍ଟାଣ୍ଡିଂ ପ୍ୟାସେଞ୍ଜର ପ୍ରାୟ ନଥିଲେ ।

"ଆପଣ କେଉଁଠୁ ଆସିଲେ ?" ନିରବତା ଭଙ୍ଗ କରି ପଣ୍ଡିତେ ପ୍ରଶ୍ନକଲେ ପାଖ ସିଟ୍‌ରେ ବସିଥିବା ସହଯାତ୍ରୀଙ୍କୁ ।

"ଭଦ୍ରକରୁ ।" ସହଯାତ୍ରୀ ଯୁବକ ସରଳ ଭାବରେ ଉତ୍ତର ଦେଲେ ।

"ମୁଁ ମଧ୍ୟ ଭଦ୍ରକରୁ ଆସିଲି । ଭଦ୍ରକରୁ କଟକ ପର୍ଯ୍ୟନ୍ତ ଏ ବୟସରେ ଛିଡା ହୋଇ ଆସିବା ଯେ କି କଷ୍ଟକର । ଯାହାହେଉ ଏଇ ସିଟରେ ବସିଥିବା ଭଦ୍ରଲୋକ ଜଣକ ମୋ ଅବସ୍ଥା ଦେଖି ସିଟ୍‌ଟି ଛାଡି ଦେବାକୁ ଅନ୍ତତଃ ଦଶମିନିଟ ପାଇଁ ହେଉ ପଛେ ଟିକିଏ ଶାନ୍ତି ମିଳିଲା ।" ପଣ୍ଡିତେ ପୁଣି ଦୀର୍ଘଶ୍ୱାସ ଟାଣିଲେ ।

"ଆପଣଙ୍କୁ ସିଟ୍‌ଟି ଛାଡି ଦେଇଥିବା ଭଦ୍ରଲୋକ ହେଉଛନ୍ତି ମୋର ବନ୍ଧୁ ଅଜୟ ମହାନ୍ତି । ଆମେ ଦୁହେଁ ଭଦ୍ରକରୁ ଆସିଲୁ ।"

"ଅଜୟ ମହାନ୍ତି ? ମାନେ କଣ୍ଟ୍ରାକ୍‌ଟର ଅଜୟ ମହାନ୍ତି ?"

"ହଁ"

"ତାଙ୍କ ଘର ଷ୍ଟେସନ ବଜାରରେ ? "

"ଆପଣ କ'ଣ ତାକୁ ଜାଣିଛନ୍ତି ?" ସହଯାତ୍ରୀ ଯୁବକ ପ୍ରଶ୍ନକଲେ ।

"ଅଜୟକୁ ମୁଁ ଜାଣିନି ? ଆଖିକୁ ଟିକିଏ ଭଲ ଦେଖା ଯାଉନାହିଁ ବୋଲି ତାକୁ ଚିହ୍ନିପାରିଲି ନାହିଁ । ଆପଣ ଜାଣି ନାହାନ୍ତି ଅଜୟ ସହିତ ମୋର ସଂପର୍କ କେତେ ଘନିଷ୍ଠ । ସେଭଳି ଘନିଷ୍ଠତା ନଥିଲେ ବସ୍‌ରେ ଏ ଭିଡ ଭିତରେ କେହି କ'ଣ କାହାକୁ ସିଟ୍‌ଟିଏ ଛାଡି ଦେଇପାରେ । ଅଜୟ ତ ଗୋଟିଏ ପିଲା ନୁହେଁ, ଗୋଟିଏ ରତ୍ନ । ସେ ମୋ' ପାଇଁ ସିଟ୍‌ଟା ଛାଡି ଦେବ ନାହିଁ ତ ଆଉ କାହା ପାଇଁ ଛାଡିବ ?"

ଏଥର ପଣ୍ଡିତ ଆରମ୍ଭ କଲେ ଅଜୟ ସହିତ ତାଙ୍କ ସମ୍ପର୍କର ଇତିହାସ ।

"ଅଜୟ ସେତେବେଳେ ଅଷ୍ଟମ ଶ୍ରେଣୀରେ ପଢୁଥାଏ ଏବଂ ମୁଁ ସେହି ସ୍କୁଲରେ ସଂସ୍କୃତ ଶିକ୍ଷକ ଥାଏ । ସେଦିନ ହଠାତ୍ ଅଜୟ ମୋ ନଜରକୁ ଆସିଲା, ଯେଉଁଦିନ ସଂସ୍କୃତ କ୍ଲାସରେ ସେ ମୋଠାରୁ ଭୀଷଣ ଭାବରେ ମାଡ ଗାଳି ଖାଇଥିଲା ଠିକ୍ ଭାବରେ ପାଠପଢା କରି ନଥିବାରୁ । କ୍ଲାସ୍ ପରେ ମତେ କମନରୁମରେ ଦେଖା କରିବାକୁ ନିର୍ଦ୍ଦେଶ

ଦେଇ ମୁଁ କ୍ଲାସ ଛାଡିଲି । ନିର୍ଦ୍ଦିଷ୍ଟ ସମୟରେ ଅଜୟ ମୋ ପାଖରେ ହାଜର ହେଲା । ସେତେବେଳକୁ ଅନ୍ୟ କୌଣସି ଶିକ୍ଷକ ସେଠାରେ ନଥାନ୍ତି । ଅତି ଦୟନୀୟ ଅବସ୍ଥାରେ ମୋ ସାମ୍ନାରେ ଛିଡ଼ା ହୋଇଥାଏ ବାଳକ ଅଜୟ । ଅତି ଦୁର୍ବଳ ଶରୀର । ପିନ୍ଧିଥାଏ ମଇଳା ହାଫ୍‌ପେଣ୍ଟ ଏବଂ ଚିରା ହାଫ୍‌ସାର୍ଟ । ପାଠପଢ଼ା ଠିକ୍ ଭାବରେ ନକରିବାର କାରଣ ପଚାରିଲି । କ୍ଲାସରେ ଏତେ ମାଡଖାଇବା ପରେ ଆଦୌ କାନ୍ଦି ନଥିବା ଅଜୟ ମୋ ସାମ୍ନାରେ ଭେଁ ଭେଁ କରି କାନ୍ଦି ଉଠିଲା । ତାକୁ ଅଭୟ ଦେଇ ସବୁ କଥା ଖୋଲି କହିବାକୁ କହିଲି । ସେ କାନ୍ଦି କାନ୍ଦି ବର୍ଣ୍ଣନା କରି ଚାଲିଲା ତା'ର ପାରିବାରିକ ଦୁରାବସ୍ଥାର କାହାଣୀ । ବାପ ଛେଉଣ୍ଡ ଅଜୟ ଦୟନୀୟ ଅବସ୍ଥାରେ ପାଠ ପଢ଼ିବାକୁ ସାହସ କରିଥାଏ । ଘରେ ପେଟ ପୁରାଇ ଗଣ୍ଡେ ଖାଇବାକୁ ନଥିବା ପିଲାଟା ପୋଷାକ କେଉଁଠୁ ଆଣିବ ନାଁ ବହିପତ୍ର କେମିତି କିଣିବ ? ବହି ନାହିଁ ବୋଲି ସେଦିନ ସେ ପାଠପଢ଼ା କରି ପାରିନଥିଲା । ତା'ର କରୁଣ ଇତିହାସ ଶୁଣିସାରିଲା ପରେ ମୋର କଠୋର ମନ ବରଫ ଭଳି ତରଳି ଗଲା । ତା'ର ପିଠି ଥାପୁଡ଼େଇ ତାକୁ ସେଦିନ ମୁଁ ଆଶ୍ୱାସନା ଦେବା ସଂଗେ ସଂଗେ ସଂସ୍କୃତ ବହି ଖଣ୍ଡିଏ ଦେଇଥିଲି । ଅସୁବିଧା ସମୟରେ ମୋ ପାଖକୁ ଆସି ନିଃସଙ୍କୋଚରେ ପ୍ରକାଶ କରିବାକୁ ତାକୁ ଭରସା ଦେଇଥିଲି । ମୋର ସେଦିନର ସାମାନ୍ୟ ଆଶ୍ୱାସନା ଅଜୟର ମନୋବଳକୁ ଶତଗୁଣିତ କରିଥିଲା ଏବଂ ସେହି ବର୍ଷ ସେ ସଂସ୍କୃତରେ ସବୁଠାରୁ ବେଶି ନମ୍ବର ରଖିଥିଲା ତାଙ୍କ କ୍ଲାସ୍‌ରେ । ତା'ର ପ୍ରତିଭା ଯେ ଅଭାବ ଅନାଟନ ଭିତରେ ବିକଶିତ ହୋଇପାରୁନଥିଲା, ଏ ଧାରଣା ମୋର ଦୃଢ଼ିଭୂତ ହୋଇଥିଲା । ତାପରେ ମୁଁ ଅଜୟକୁ ନେଇ ଆସିଥିଲି ମୋ' ପାଖକୁ ଅର୍ଥାତ ସ୍କୁଲ ହଷ୍ଟେଲକୁ । ତା'ର ହଷ୍ଟେଲ ଖର୍ଚ୍ଚ ଠାରୁ ଆରମ୍ଭ କରି ଯାବତୀୟ ଖର୍ଚ୍ଚ ମୁଁ ସ୍ୱତଃ ପ୍ରବୃତ୍ତ ଭାବରେ ବହନ କରୁଥାଏ । ସେଥିପାଇଁ ଅଜୟ ମୋତେ ତା'ର ପିତା ମାତାଙ୍କ ଠାରୁ ଅଧିକ ଭକ୍ତି ଓ ସମ୍ମାନ କରୁଥାଏ । ହାଇସ୍କୁଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି ଅଜୟ ଯେଉଁଦିନ ମୋର ପାଦ ଛୁଇଁ ଆଶୀର୍ବାଦ ଭିକ୍ଷା କରିଥିଲା, ମୁଁ ଆନନ୍ଦରେ ତାକୁ ବହୁ ସମୟ ପର୍ଯ୍ୟନ୍ତ ଛାତିରେ ଜାବୁଡ଼ି ଧରିଥିଲି । ତା'ପରେ ଅଜୟ କଲେଜରେ ପଢ଼ିଲା । ସେତେବେଳେ ମଧ ମୁଁ ତାକୁ ଆର୍ଥିକ ସାହାଯ୍ୟ ଯୋଗାଇ ଦେଉଥିଲି । କଲେଜ ପଢ଼ା ଶେଷ ପରେ ଅଜୟ କଣ୍ଟ୍ରାକ୍ଟ କାମ ଆରମ୍ଭ କଲା । ବେଶ୍ ଭଲ ପଇସା କମାଇଲା । ତା'ର ଉନ୍ନତି ଖବର ଶୁଣିଲେ ମୋ' ଛାତି କୁଣ୍ଢେମୋଟ ହୋଇଯାଏ । ଯେତେବେଳେ ଦେଖାହେଲେ ମଧ ମୋ ପାଦଛୁଇଁ ପ୍ରଣାମ କରିବାକୁ ସେ ଭୁଲିଯାଏ ନାହିଁ । ମୋର ଚାକିରୀରୁ ଅବସର ଗ୍ରହଣ କଲାପରେ ଆଉ ଅଜୟ ସହିତ ବିଶେଷ ଦେଖା ସାକ୍ଷାତ ହୋଇପାରେନାହିଁ । ସେ ମଧ ତା' ବ୍ୟବସାୟରେ ବ୍ୟସ୍ତରହେ । ଅଜୟ ପାଇଁ ମୁଁ ଯେଉଁ ତ୍ୟାଗ ସ୍ୱୀକାର କରିଛି, ସେଥିପାଇଁ ସେ ସାରାଜୀବନ କୃତଜ୍ଞ ରହିବା ସ୍ୱାଭାବିକ । ଆଜି ହୁଏତ ତାକୁ ଗୁରୁ ଋଣ ଶୁଝିବାକୁ କିଛିଟା ସୁଯୋଗ ମିଳିଗଲା । ଆପଣ ହୁଏତ ଲକ୍ଷ୍ୟ କରିଥିବେ, ସେ ମୋତେ ଦେଖିବା ମାତ୍ରେ କେମିତି ବ୍ୟସ୍ତ ହୋଇ ଉଠିଥିବ ଏବଂ ମୁଁ ଛିଡ଼ା

ହୋଇ ବସ୍‌ରେ ଆସିଛି ଜାଣି ସେ ବିବ୍ରତ ହୋଇ ପଡିଥିବ । ଦେଖିଲେନି, ସାଙ୍ଗେ ସାଙ୍ଗେ ତା' ସିଟ୍‌ଟି ମତେ ଛାଡିଦେଇ କେମିତି ନିରବରେ ଓହ୍ଲାଇ ଚାଲିଗଲା । ବୁଝିଲେ ଆଜ୍ଞା, ଦରକାର ପଡିଲେ ଅଜୟ ମୋ ପାଇଁ ଜୀବନ ଦେଇଦବ । ଏତେଦିନ ପରେ ହଠାତ୍ ଦେଖା ହେଲା ଯେ ମୁଁ ଚଣ୍ଡାଳ ତାକୁ ଚିହ୍ନି ପାରିଲି ନାହିଁ କି ପଦେ କଥା ବି ହୋଇ ପାରିଲି ନାହିଁ ।

ପାଖ ସିଟ୍‌ରେ ବସି ପଣ୍ଡିତଙ୍କର ''ଅଜୟ ଉପାଖ୍ୟାନ'' ଶୁଣୁଥିବା ଯୁବକଟିର ପାଟିରୁ ହଠାତ୍ ବାହାରି ପଡିଲା , ''ଲୋକଟା କେଡ଼େ କୃତଘ୍ନ ସତେ ?''

'' କିଏ କୃତଘ୍ନ ଆଜ୍ଞା ?'' ପଣ୍ଡିତେ ଆଶ୍ଚର୍ଯ୍ୟରେ ପ୍ରଶ୍ନ କଲେ ।

'' ମୁଁ ଅଜୟକୁ ମୋର ବନ୍ଧୁ ହିସାବରେ, ଜଣେ ଭଲ କଣ୍ଡାକ୍ଟର ହିସାବରେ ଏବଂ ଜଣେ ହୃଦୟବାନ ବ୍ୟକ୍ତି ହିସାବରେ ଜାଣିଥିଲି ।''

'' ଅଜୟ ଜଣେ ସହୃଦୟ ବ୍ୟକ୍ତି, ଏଥିରେ କ'ଣ ଆପଣଙ୍କର ସନ୍ଦେହ ଅଛି ?'' ପଣ୍ଡିତେ ପୁଣି ପ୍ରଶ୍ନକଲେ ।

'' ଅଜୟ ଭଦ୍ରକ ଷ୍ଟେସନ ବଜାରରୁ ଏଇ ସିଟ୍‌ରେ ବସି ବସି ଆସିଥିଲା । ଆପଣ କଚେରୀ ବଜାରରୁ ଛିଡା ହୋଇ ଆସିଥିଲେ, ଏକଥା ଅଜୟ ଆରମ୍ଭରୁ ଭଲ ଭାବରେ ଜାଣିଥିଲା । ଆପଣଙ୍କୁ ଆଦୌ ନ ଦେଖିବାର ଅଭିନୟ କରି ସେ ମୁହଁ ଲୁଚାଉଥିଲା । ଓ.ଏମ୍. ପି ଛକରେ ଓହ୍ଲାଇ ତା'ର ରେଭେନ୍ସା କଲେଜ ଯିବାର ଥିଲା । ତା'ର ବସ୍ ଯାତ୍ରା ଶେଷ ହୋଇଯିବା ସଂଗେ ସଂଗେ ଆପଣଙ୍କୁ ତା'ର ସିଟ୍‌ଟି ଦେଇ ସେ ଓହ୍ଲାଇ ଯାଇଥିଲା । ସେ ତ ଗୋଟିଏ ବାଣରେ ଦୁଇଟି ଶୀକାର କରିଗଲା । ଆପଣଙ୍କୁ ପ୍ରକୃତରେ ସାହାଯ୍ୟ କରିବାର ଉଦ୍ଦେଶ୍ୟ ତା'ର ନଥିଲା । ଆପଣଙ୍କ ସହିତ ତା'ର ସମ୍ପର୍କ ଜାଣିସାରିବା ପରେ ମତେ ବି ଦୁଃଖ ଲାଗୁଛି ।'' ଯୁବକଟି ନିର୍ବିକାର ଭାବରେ ମତ ବ୍ୟକ୍ତ କଲା ।

ମଦନ ପଣ୍ଡିତଙ୍କ ଗୋରା ତକ୍ ତକ୍ ମୁହଁଟା ଶୁଷ୍କ ହୋଇ କ୍ରମଶଃ ରକ୍ତ ବର୍ଣ୍ଣ ଧାରଣ କଲା । ତାଙ୍କ ସର୍ବାଙ୍ଗରୁ ଝାଳ ଜକେଇ ଆସିଲା । ଦୁଃଖ, ଅବଶୋଷ ତଥା ଅନୁତାପର ଗ୍ଲାନିରେ କ୍ରମଶଃ ଭାଙ୍ଗିପଡୁଥିବା ପଣ୍ଡିତ ମହାଶୟ ଗୋଟାଏ କୃତଘ୍ନ ଦ୍ୱାରା ପ୍ରଦତ୍ତ ସିଟ୍‌ରେ ଆଉ ନ ବସିବାର ସିଦ୍ଧାନ୍ତ ନେଇ ହଠାତ୍ ଛିଡା ହୋଇଯାଇ ରୁମାଲରେ ମୁହଁ ପୋଛିଲେ ।



# ଅପହଞ୍ଚ ଅନ୍ଧାର

" ଆଜ୍ଞା ଟିକିଏ ଶୁଣିବେ ?"

ରେଲୱେ ପ୍ଲାଟଫର୍ମର ବାହାରକୁ ଆସି କିଛିଟା ଭାରି ଲାଗୁଥିବା ନିଜର ବ୍ରିଫ୍‌କେଶ୍‌ଟି ତଳେ ରଖି ରୁମାଲରେ ମୁହଁକୁ ଚିକ୍‌କଣ କରି ପୋଛୁ ପୋଛୁ କିଛି ପଚାରିବା ଉଦ୍ଦେଶ୍ୟରେ ଅଳ୍ପ ଦୂରରେ ଛିଡାହୋଇ ସିଗାରେଟ୍ ପିଉଥିବା ଜଣେ ଭଦ୍ରଲୋକଙ୍କୁ ପ୍ରଶ୍ନ କଲେ ସଦ୍ୟ ଟ୍ରେନ୍‌ରୁ ଓହ୍ଲାଇ କ୍ଳାନ୍ତ ହୋଇପଡିଥିବା ସିପ୍ରା ଦାସ। ଅନ୍ୟମନସ୍କ ଭାବରେ ସିଗାରେଟ ପିଉଥିବା ଭଦ୍ରବ୍ୟକ୍ତିଙ୍କ ଠାରୁ କୌଣସି ଉତ୍ତର ନମିଳିବାରୁ ଆଉ ଟିକିଏ ପାଖକୁ ଯାଇ ନିଜର ପ୍ରଶ୍ନକୁ ପୁଣିଥରେ ଦୋହରାଇଲେ ସିପ୍ରା । ଏଥର ଭଦ୍ରବ୍ୟକ୍ତି ପଛକୁ ଫେରି ଚାହିଁଲେ କିଛି ଶୁଣିବା ଉଦ୍ଦେଶ୍ୟରେ । କିନ୍ତୁ ନିଜ ଆଖିସାମ୍ନାରେ ଯାହା ଦେଖିଲେ ସେଥିରେ ସେ ଯେତିକି ଆଶ୍ଚର୍ଯ୍ୟହେଲେ ତା'ଠାରୁ ଅଧିକ ବିବ୍ରତ ହୋଇ ଉଠିଲେ । ତାଙ୍କ ଅଜାଣତରେ ଅଧାପିଆ ସିଗାରେଟ ଖଣ୍ଡକ ଆପେ ଆପେ ଖସିପଡିଲା ହାତରୁ ।

" ସିପ୍ରା ? ତମେ ହଠାତ୍ ଏଠାରେ ? ମୁଁ ଭୁଲ ଦେଖୁ ନାହିଁତ ? " ଭଦ୍ର ବ୍ୟକ୍ତିଙ୍କ କଣ୍ଠସ୍ୱର ଥରି ଉଠୁଥିଲା ।

ସିପ୍ରା ବଲ୍ ବଲ୍ କରି ଅପରିଚିତ ଭଦ୍ର ଲୋକଙ୍କୁ କିଛି ସମୟ ପର୍ଯ୍ୟନ୍ତ ଦୋ ଦୋ ଚିହ୍ନା ହେଲାପରି ପ୍ରଶ୍ନବାଚୀ ଆଖିରେ ଚାହିଁ ରହିବା ପରେ ତା'ର ଦୁଇ ଚକ୍ଷୁ ଉଜ୍ଜ୍ୱଳ ହୋଇଉଠିଲା ।

" ତମ ଚିହ୍ନିବାରେ ଆଦୌଭୁଲ ହୋଇନି । ତମେ ସଂପୂର୍ଣ୍ଣ ଭାବରେ ଠିକ୍ ଦେଖିଛ ପ୍ରଦୀପ । ତମକୁ ଏମିତି ଆକସ୍ମିକ ଭାବରେ ଆବିଷ୍କାର କରିବି, ଏକଥା ମୁଁ କେବେବି ଚିନ୍ତା କରିନଥିଲି ।" ସିପ୍ରାର ଦୁଇ ଆଖି ଛଳ ଛଳ ହୋଇଉଠୁଥିଲା । ତଥାପି ସେ ଅପଲକ ନୟନରେ ଚାହିଁ ରହିଥିଲା ପ୍ରଦୀପର ଘନକୃଷ୍ଣ ଶ୍ମଶ୍ରୁଳ ମୁଖମଣ୍ଡଳକୁ ।

" ସାଙ୍ଗରେ ଆଉ କିଏ ?"

" ନାଁ ମୁଁ ଏକଲା ।" ରୁମାଲରେ ପୁଣିଥରେ ଆଖି ଦୁଟାକୁ ପରିଷ୍କାର କରୁଥିଲା ସିପ୍ରା ।

" ଯିବ କୁଆଡେ ?"

" ଆସନ୍ତା କାଲି ଏଇଠି ଗୋଟିଏ ଇଣ୍ଟରଭିଉ ଦେବାରେ ଅଛି । ଏ ସହର ସହିତ ମୋର ଆଦୌ ପରିଚିତି ନାହିଁ । ଟ୍ରେନ୍‌ରୁ ଓହ୍ଲାଇ ଭାବୁଥିଲି କୌଣସି ନିରାପଦ ହୋଟେଲର ଠିକଣା ବୁଝି ସେଇଠି ରାତିଟା ରହିଯିବି । ଆଛା ପ୍ରଦୀପ, ମତେ ତମ ପସନ୍ଦର ଗୋଟିଏ ହୋଟେଲରେ ପହଞ୍ଚାଇ ଦେଇ ଆସିବ ? "

" ଆଜିକାଲି ସମୟରେ , ପୁଣି ଏଭଳି ସହରରେ ଗୋଟିଏ ନିରାପଦ୍ ହୋଟେଲ ଖୋଜିବା ଅର୍ଥ ନିଜର ବୋକାମିର ପରିଚୟ ଦେବା ।"

" ତା' ହେଲେ ମୁଁ ଏବେ କ'ଣ କରିବି ଯେ ?"

" ତୁମେ ଚାହିଁବତ ପାଖା ପାଖି କୌଣସି ଗୋଟିଏ ହୋଟେଲରେ ବନ୍ଦୋବସ୍ତ କରିଦେବି । ନଚେତ୍ ଯଦି ଆପତ୍ତି ନଥାଏ ମୋ କ୍ୱାଟରରେ ରହିଯାଇପାର । କିନ୍ତୁ ମୋ' କ୍ୱାଟରରେ ମୁଁ ସଂପୂର୍ଣ୍ଣ ଏକଲା ।"

" ତମେ କ'ଣ ଭାବୁଛ ତମର କୌଣସି ସର୍ତ୍ତରେ ମୁଁ ଦ୍ୱିମତ ହେବି ? ବରଂ ତମ ସହିତ ଆଳାପ ଆଲୋଚନା ପାଇଁ ମୁଁ ଅଧିକ ସମୟ ପାଇବି । ବାସ୍ତବିକ ଆଜି ଦିନଟା ମୋ' ପାଇଁ ଗୋଟିଏ ସ୍ମରଣୀୟ ଦିନ ହୋଇ ରହିଯିବ ।" କ'ଣ ପାଇଁ କେଜାଣି ଆନନ୍ଦରେ ସିପ୍ରା ଅଧିର ହୋଇଉଠୁଥିଲା ।

" ଠିକ୍ ଅଛି ମୋ' କ୍ୱାଟରର ଦୂରତ୍ୱ ଏଇଠୁ କେତେ ପାହୁଣ୍ଡର ରାସ୍ତା । ଆସ, ମୋ' ସାଙ୍ଗରେ ଆସ ।" ସିପ୍ରାର ବ୍ରିଫ୍‌କେସ୍‌ଟି ଉଠାଇ ନେଇ ପ୍ରଦୀପ ଆଗେ ଆଗେ ଚାଲିଥାଏ । ପଛେ ପଛେ ସିପ୍ରା । କାହାରି ମୁହଁରେ ଭାଷା ନାହିଁ ।

ସିପ୍ରା ଆକାଶ ପାତାଳ କେତେ କ'ଣ ଚିନ୍ତା କରି ଚାଲିଥାଏ । ଏଇ ସେହି ପ୍ରଦୀପ ପଟ୍ଟନାୟକ । ପ୍ରଦୀପ ଯେଉଁଦିନ ପ୍ରଥମ କରି ତାଙ୍କ କଲେଜରେ ପାଦ ଦେଇ କ୍ଲାସରେ ଯୋଗଦେଇଥିଲା ସେଦିନ ଲେଡିଜ୍ କମନ ରୁମରେ ଗୋଟିଏ ଚାପା ଗୁଞ୍ଜରଣ ସୃଷ୍ଟି ହୋଇଥିଲା । ପ୍ରଦୀପର ରାଜକୀୟ ଚେହେରା, ମାର୍ଜିତ ପରିପାଟି, ବିଶେଷ କରି ତା'ର ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଚାହାଣୀ କଲେଜର ପୁଅ ଝିଅ ସମସ୍ତଙ୍କୁ ବିସ୍ମିତ କରିବା ସଂଗେ ସଂଗେ ଆକୃଷ୍ଟ କରିଥିଲା ମଧ୍ୟ । ତା' ପରେ ଆରମ୍ଭ ହୋଇଗଲା ପ୍ରତିଯୋଗୀତା ଆଶାୟୀ ଝିଅମାନଙ୍କ ମଧ୍ୟରେ । କେବେ ଥରେ ନିରୋଳାରେ ପ୍ରଦୀପ ସହିତ ପଦଟିଏ କଥାହେବା କିମ୍ବା ତା' ସାମ୍ନାରେ ଟିକିଏ ହସି ଦେଇ ନିଜର ପ୍ରେମ ନିବେଦନ ସଙ୍କେତ ଜଣାଇବା ପାଇଁ ତା'ର ସହପାଠିନୀ ମାନଙ୍କ ଠାରୁ ଆରମ୍ଭ କରି ଉପର ଏବଂ ତଳ କ୍ଲାସର ଝିଅ ମାନଙ୍କର ଲୁଚାଛପା ପ୍ରତି ଯୋଗିତା ଅନ୍ୟପିଲାଙ୍କର ଗାତ୍ର ଦାହର କାରଣ ହୋଇଉଠିଲା । କିନ୍ତୁ ପ୍ରଦୀପର ସେ ସବୁ ଦିଗ ପ୍ରତି ଅନାଶକ୍ତ ଭାବ ତା' ମହତ୍ୱକୁ ବହୁଗୁଣିତ କରିବା ସଂଗେ ସଂଗେ ପ୍ରତିଯୋଗୀମାନଙ୍କ ମୁଣ୍ଡ ବ୍ୟଥାର କାରଣ ହୋଇ ଛିଡା ହେଲା । ସମୟ କ୍ରମେ ପରିସ୍ଥିତି ଏପରି ହେଲା ଯେ, ଆଶାୟୀ ଛାତ୍ରମାନେ ପ୍ରେମ ପ୍ରତିଯୋଗୀତାରେ ବହୁ ପଛରେ ପଡିଯାଇଥିବାର ଲକ୍ଷ୍ୟ କରି ପ୍ରଦୀପ ସହିତ ବନ୍ଧୁତା ସ୍ଥାପନ ଦ୍ୱାରା ସେମାନଙ୍କର ମନଲାଖି ଝିଅମାନଙ୍କ ନିକଟବର୍ତ୍ତି ହେବାପାଇଁ ଚେଷ୍ଟାକରିବାକୁ ମଧ୍ୟ କୁଣ୍ଠାବୋଧ କଲେ ନାହିଁ । ଶେଷରେ ବହୁ କଳକୌଶଳ, ଚେଷ୍ଟା ଅପଚେଷ୍ଟା ମାଧ୍ୟମରେ କେବଳ ସିପ୍ରା ଦାସ ହିଁ ପ୍ରଦୀପ ପଟ୍ଟନାୟକ ପ୍ରଦତ୍ତ ପ୍ରୀତି ଗୋଲାପକୁ ନିଜର ଆଜାନୁଲମ୍ବିତ ଘନ କୃଷ୍ଣ ବେଣୀରେ ଖୋସିବା ପାଇଁ ସମର୍ଥ ହୋଇଥିଲା । ସିପ୍ରା କେବଳ ପ୍ରଦୀପର ସହପାଠିନୀ ନଥିଲା, ସେ ଥିଲା ଅନିନ୍ଦ୍ୟ ରୂପବତୀ, ମେଧାବିନୀ, ସହନଶୀଳା, ବୁଦ୍ଧିମତୀ ଏବଂ ଆହୁରୀ ଅନେକ ଗୁଣସମ୍ପନ୍ନା ।

ଥରେ ପ୍ରଦୀପ ଠାରୁ ସବୁଜ ସଂକେତ ପାଇସାରିବା ପରେ ସିପ୍ରା ନିଜର ସବୁକିଛି ଭୁଲିଯାଉଥିଲା । ସେ ଭୁଲିଯାଉଥିଲା ନିଜର ମାନ ମର୍ଯ୍ୟାଦା, ସ୍ଥାନ କାଳ, ଉଚିତ୍ ଅନୁଚିତ ଏବଂ ଅତୀତ ଭବିଷ୍ୟତ । ପ୍ରଦୀପ ପ୍ରେମରେ ସେ ପାଗଳୀ ହୋଇ ଯାଇଥିଲା । ବିଭିନ୍ନ ପରିବେଶରେ ସେ ପ୍ରଦୀପ ସଙ୍ଗେ ମିଳିତ ହେବା ସଂଗେ ସଂଗେ ବହୁବାର ବିଭିନ୍ନ ହୋଟେଲରେ ରାତ୍ରୀ ଯାପନ କରିବାର ସୁଯୋଗ ହାତ ଛଡା କରି ନ ଥିଲା । କିନ୍ତୁ ଏ ସବୁ ସତ୍ତ୍ୱେ ଉଭୟେ ପାଠ ପଢାରେ ତ୍ରୁଟି କରିନଥିଲେ । ଏମ୍.ଏସ୍.ସି ପରୀକ୍ଷାରେ କୃତିତ୍ୱର ସହ ପାସ କରିବା ପରେ ଉଭୟଙ୍କ କଲେଜ୍ ଯିବା ବନ୍ଦ ହୋଇଯାଇଥିଲା । ତା' ସହିତ ବନ୍ଦ ହୋଇଯାଇଥିଲା ସେମାନଙ୍କର ବାରମ୍ବାର ମାନସିକ ତଥା ଦୈହିକ ମିଳନ । ତା' ପରବର୍ତ୍ତି ସମ୍ପର୍କ କିଛିଦିନ ପାଇଁ ଚିଠି ପତ୍ରରେ ହିଁ ସୀମିତ ରହିଲା ।

ହଠାତ୍ ଦିନେ ଖବର ପାଇ ସିପ୍ରା ସ୍ତବ୍ଧ ହୋଇଯାଇଥିଲା ଯେ ପ୍ରଦୀପ ଘର ଛାଡି କେଉଁଆଡେ ଚାଲିଯାଇଛି ଏବଂ ତାକୁ ନ ଖୋଜିବା ପାଇଁ ଛୋଟ ଚିଠି ଖଣ୍ଡିଏ ଘର ଉଦ୍ଦେଶ୍ୟରେ ଛାଡି ଯାଇଛି, ଯାହାର ନକଲ ସିପ୍ରା ନିକଟକୁ ପଠାଇଥିଲା । କିନ୍ତୁ ଘର ଛାଡିବାର କୌଣସି କାରଣ ସେଥିରେ ଉଲ୍ଲେଖ ନଥିଲା । କେବଳ ପ୍ରଦୀପର ପ୍ରତୀକ୍ଷାରେ ସିପ୍ରା ବହୁ ସୁନ୍ଦର ବିବାହ ପ୍ରସ୍ତାବକୁ ଆଡେଇ ଯାଇଥିଲା । ତା'ର ପ୍ରଗାଢ ଆତ୍ମବିଶ୍ୱାସ ତାକୁ ଦୀର୍ଘ ଦଶ ବର୍ଷ ଧରି ସାନ୍ତ୍ୱନା ଦେଇ ଆସିଥିଲା ଯେ, ପ୍ରଦୀପ ଦିନେ ନା ଦିନେ ଫେରି ଆସିବ ଏବଂ ତାକୁ ବଧୂ ବେଶରେ ସଜାଇ ଅନ୍ତଃପୁରକୁ ନେଇଯିବ ତା'ର ସୁନେଲି ସ୍ୱପ୍ନକୁ ସାକାର କରି । କିନ୍ତୁ ଦଶ ବର୍ଷ ବିତିଯାଇଥିଲେ ସୁଦ୍ଧା ପ୍ରଦୀପ ନାଁ ଘରକୁ ଫେରିଲା ନାଁ ସିପ୍ରା ନିକଟକୁ ।

ଝାପ୍‌ସା ଅନ୍ଧାର ଭିତରେ ଦୁହେଁ ମାଡି ଚାଲିଥିଲେ ଆଗକୁ । କାହାରି ମୁହଁରେ ଶବ୍ଦ ନଥିଲା । ଦୀର୍ଘ ଦିନର ଅସନ୍ତୋଷକୁ ଚାପି ରଖି ସିପ୍ରା ଚିନ୍ତା କରୁଥିଲା ଆଲୋଚନାଟା କେଉଁ ଅଧ୍ୟାୟରୁ ଆରମ୍ଭ କରିବ ଏବଂ କିଭଳି ଭାବେ ଆକ୍ରମଣ କରି ପ୍ରଦୀପର ବାକ୍ ଚାତୁରିକୁ କ୍ଷତ ବିକ୍ଷତ କରି ପକାଇବ । ପଦୀପ ମଧ୍ୟ ଚିନ୍ତା କରୁଥିଲା କିଭଳି ଭାବେ ସିପ୍ରାର ସମ୍ମୁଖୀନ ହେବ କିମ୍ବା ସିପ୍ରାକୁ ପ୍ରବୋଧନ ଦେବ । ହଠାତ୍ ପ୍ରଦୀପର ପାଦ ରାସ୍ତାକଡର ଗୋଟାଏ ଗେଟ୍ ପାଖରେ ଅଟକିଲା । ଗେଟ୍ ଖୋଲି ଦୁହେଁ ଭିତରକୁ ପ୍ରବେଶ କଲେ । ଅତିମାତ୍ରାରେ କ୍ଲାନ୍ତ ହୋଇପଡିଥିବା ସିପ୍ରା ପ୍ରଥମେ ସୋଫା ଉପରେ ବସିପଡି କ୍ଲାନ୍ତି ମେଣ୍ଟାଇବାକୁ ଚେଷ୍ଟାକଲା ।

" ତମେ ବାଥ୍‌ରୁମକୁ ଯାଇ ଫ୍ରେସ୍ ହୋଇଆସ । ମୁଁ ଟିକିଏ ବାହାରୁ ଆସୁଛି ।" ପ୍ରଦୀପ ସ୍କୁଟର ବାହାର କଲା ବାହାରକୁ ଯିବା ଉଦ୍ଦେଶ୍ୟରେ ।

" ଶୀଘ୍ର ଫେରି ଆସିବ ।"

ଏଥର ସିପ୍ରା ଘରର ଭିତର ଅଂଶରେ ନଜର ବୁଲାଇ ଆଣି ପ୍ରତ୍ୟେକଟି ରୁମ୍ ବୁଲି ଦେଖିବାକୁ ଲାଗିଲା । ଡ୍ରଇଂରୁମ୍‌ର ସାଜସଜ୍ଜା କେବଳ ଖଣ୍ଡିଏ ସୋଫା ଭିତରେ ହିଁ

ସୀମିତ କହିଲେ ଚଳେ, ଯେଉଁଠି ପରିଷ୍କାର ପରିଚ୍ଛନତା ଅଭାବର ଲକ୍ଷଣ ସ୍ପଷ୍ଟ । ବେଡ୍‌ରୁମ୍‌ରେ ଗୋଟିଏ ଚାରି ଫୁଟିଆ ବେଡ୍ । ବେଡ୍ ପାଖରେ ଖଣ୍ଡିଏ ଛୋଟ ଟେବୁଲ ଉପରେ ବିପର୍ଯ୍ୟସ୍ତ ଅବସ୍ଥାରେ କିଛି କାଗଜ ପତ୍ର, ଡାଏରୀ ସିଗାରେଟ୍ ପ୍ୟାକେଟ, ଆସ୍ ଟ୍ରେ ଏବଂ ଗୋଟିଏ ଫଟୋ ଷ୍ଟାଣ୍ଡ ଯେଉଁଥିରେ ସିପ୍ରା ଓ ପ୍ରଦୀପର ପୂର୍ଣ୍ଣ ଅବୟବ ଫଟୋ ସୁଶୋଭିତ । ଫଟୋଟି ଉଠାଇଆଣି ସିପ୍ରା କିଛି ସମୟ ନିରୀକ୍ଷଣ କଲା । ତା'ର ସ୍ମୃତିକୁ ପ୍ରଦୀପ ଏପର୍ଯ୍ୟନ୍ତ ସାଇତି ରଖିଛି ବୋଲି ଆଶ୍ଚର୍ଯ୍ୟ ଯେତିକି ହେଲା, ଖୁସିରେ ତା' ଛାତି ଭିତରୁ କୋହ ମଧ୍ୟ ସେତିକି ପରିମାଣର ଉଦ୍ରେକ ହେଲା । ତା'ର କଜ୍ଜଳ ମଖା ଆଖି କୋଣରୁ ଦୁଇଧାର ଆନନ୍ଦାଶ୍ରୁ ବୋହି ଆସି ତା' ମନ ଭିତରେ ପ୍ରଦୀପ ବିରୁଦ୍ଧରେ ବସାବାନ୍ଧି ଥିବା ସବୁତକ ଅଳନ୍ଧୁକୁ ଧୋଇ ପରିଷ୍କାର କରି ଦେଇଥିଲା । ବେଡ୍‌ରୁମରୁ ମୁହଁ ଫେରାଇ ଚାଲିଲା କିଚେନ୍ ଉଦ୍ଦେଶ୍ୟରେ । ଦିନଟାଏ ଅତ୍ୟନ୍ତ ନିଜ ହାତରନ୍ଧା ଖାଦ୍ୟ ପ୍ରଦୀପ୍‌କୁ ଖୁଆଇ ପାରିବାର ଅଭିଳାଷ ନେଇ ରୋଷେଇଶାଳ ଦରଜା ଖୋଲିଲା । କିନ୍ତୁ ସେଠାକାର ଅବସ୍ଥା ଦେଖି ତାକୁ ହତାଶ ହେବାକୁ ହେଲା । ଗୋଟିଏ ହିଟର ଏବଂ କିଛିଟା ଚା' ସରଞ୍ଜାମ ବ୍ୟତିତ ସେଠାରେ ଅନ୍ୟ କୌଣସି ବ୍ୟବସ୍ଥା ନଥିଲା । ଡାଇନିଂ ରୁମର ର୍‍ୟାକ ଉପରେ କେତେ ଗୁଡିଏ ବହି ଏବଂ ମ୍ୟାଗାଜିନ୍ ସୁସଜ୍ଜିତ ଅବସ୍ଥାରେ ରହିଥିବାର ସେ ଲକ୍ଷ୍ୟକଲା । ମାଗାଜିନ୍ ଭିତରେ ଓଡିଆ, ଇଂରାଜୀ ଏବଂ ହିନ୍ଦୀର ବିଭିନ୍ନ ପ୍ରକାର ବହି । ଏତଦ୍ ବ୍ୟତୀତ ଯେଉଁ ବହି ଗୁଡିକ ସିପ୍ରାର ଦୃଷ୍ଟି ଆକର୍ଷଣ କରିଥିଲା ସେଗୁଡିକ ହେଲା 'କେମୋଥେରାପି ଅନ କ୍ୟାନସର୍' 'ଡାୟାଗ୍ନୋସିସ୍ ଆଣ୍ଡ ଟ୍ରିଟମେଣ୍ଟ ଅଫ୍ ମାଲିଗ୍ନାଣ୍ଟ ଡିଜିଜେସ୍ '' ଏବଂ କ୍ୟାନସର ରୋଗ ଉପରେ ଆହୁରି ଅନେକ ଛୋଟ ବଡ ବହି । ଆଉ କେବଳ ବାକି ରହିଗଲା ବାଥ୍‌ରୁମ୍ । ବାଥରୁମ୍ ପରିଦର୍ଶନ ସଙ୍ଗେ ସଙ୍ଗେ ସାନ୍ଧ୍ୟ ନିତ୍ୟ କର୍ମଟା ମଧ୍ୟ ଶେଷ କରି ଫେରି ଆସିଲା ସିପ୍ରା । ସେତେବେଳକୁ ପ୍ରଦୀପ ଦୁଇଟି ପ୍ଲେଟରେ ଜବରଦସ୍ତ ଜଳଖିଆ ଦୁଇ ପ୍ଲେଟ ବାଢି ଦୁଇ ଗ୍ଲାସ ପାଣି ରଖିଦେଇ ଅପେକ୍ଷା କରିଥାଏ । ଏଥର ଆରମ୍ଭ ହେଲା ଜଳଯୋଗ ପର୍ବ । ସିପ୍ରାକୁ ଖାଇବା ଆରମ୍ଭ କରିବାର ସଙ୍କେତ ଦେଇ ଅନ୍ୟମନସ୍କ ଭାବରେ ନିଜେ ଖାଇବା ଆରମ୍ଭ କରିଦେଲା ପ୍ରଦୀପ । ସିପ୍ରାକୁ ଭୋକ ଲାଗୁଥିଲେ ମଧ୍ୟ ଖାଇବାର ଆଗ୍ରହ ନଥାଏ । ସେ ମିଠାଟିଏ ପାଟିରେ ରଖି ସ୍ଥିର ଦୃଷ୍ଟିରେ ପ୍ରଦୀପର ମୁହଁକୁ ଚାହିଁ ରହିଥାଏ । ଦଶବର୍ଷ ତଳର ପ୍ରଦୀପ ଆଉ ଆଜିର ପଦୀପ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଆଜି ନା ଅଛି ବିଗତ ଦିନର ସେ କନ୍ଦର୍ପ ସୁନ୍ଦର ଆକର୍ଷଣୀୟ କାନ୍ତି, ନା ଅଛି ସେ ଷ୍ଟେଶାଲ୍ ରୁଚି । ଅକାଳ ବାର୍ଦ୍ଧକ୍ୟର ଶିକାର ହୋଇ ଲୋକଟାର କି ଯେ ଅଦ୍ଭୁତ ପରିବର୍ତ୍ତନ ହୋଇଗଲା, ସେ କଥା ଚିନ୍ତା କରୁ କରୁ ଖାଦ୍ୟ କଥା ସେ ସଂପୂର୍ଣ୍ଣ ଭୁଲିଯାଇଥାଏ । ଅନ୍ୟପକ୍ଷରେ ସିପ୍ରାର ଆକସ୍ମିକ ଆବିର୍ଭାବ ପାଇଁ ପଦୀପ ବିବ୍ରତ ହୋଇପଡିଥିଲେ ମଧ୍ୟ ସେ ପ୍ରକାର ପରିସ୍ଥିତିକୁ ସାମ୍ନା କରିବାକୁ ଅନ୍ୟମନସ୍କ ଭାବରେ ମାନସିକ ପ୍ରସ୍ତୁତି କରିଚାଲିଥାଏ । ଦୀର୍ଘ ଦଶବର୍ଷ ଧରି ତା'ର ନିଖୋଜ ହୋଇଯିବା ଏବଂ ସିପ୍ରା ଭଳି ଝିଅର ଶାଶ୍ୱତ ପ୍ରେମ ସମ୍ପର୍କକୁ ଛିନ୍ନ କରି ଅବିଶ୍ୱାସ ଓ ପ୍ରତାରଣାର ଅନ୍ଧକାର ଭିତରେ

ଛାଡିଦେଇଥିବାର କାରଣ ସଂପର୍କରେ ସେ କି ସଫେଇ ଦେଇପାରିବ ସେଥିପାଇଁ ବିଶେଷ ଭାବରେ ଚିନ୍ତିତ ଥାଏ । ଜଳଖିଆ ପ୍ଲେଟ୍ ଟି କେତେ ବେଳରୁ ଶେଷ ହୋଇଯାଇଥାଏ ପ୍ରଦୀପର ସ୍ମରଣ ମଧ୍ୟ ନଥାଏ ।

" ତମକୁ ଖୁବ୍ ଭୋକ ଲାଗୁଛି ନା ? ଆଉ କିଛି ଖାଇ ନିଅ " ସିପ୍ରା ନିଜ ପ୍ଲେଟଟି ପ୍ରଦୀପ ଆଡକୁ ଘୁଞ୍ଚାଇ ଦେଲା ।

" ଆରେ ତମେ ଏପର୍ଯ୍ୟନ୍ତ କିଛି ଖାଇନ ଯେ । "

" ମୋ କ୍ଷୁଧାଠାରୁ ତମର କ୍ଷୁଧା ଯଥେଷ୍ଟ ଅଧିକ । ଦୀର୍ଘ ଦଶବର୍ଷର କ୍ଷୁଧା । ସାମ୍ନାରେ ପ୍ରୀୟ ଖାଦ୍ୟ ଦେଖିଲେ କିଏ ବା ଲୋଭ ସମ୍ଭରଣ କରିବ ପାରିବ ? ମନଭରି ଖାଇ ନିଅନା । ତୁମେ ଆଁ କର ତୁମକୁ ଖୁଆଇ ଦିଏ ।" ଗୋଟିଏ ମିଠା ନେଇ ପ୍ରଦୀପ ପାଟିରେ ଜବରଦସ୍ତ ଗୁଞ୍ଜି ଦେଇଥିଲା ସିପ୍ରା । ସେତେବେଳେ ସେ ସଂପୂର୍ଣ୍ଣ ଭାବେ ଭୁଲି ଯାଇଥିଲା ପ୍ରଦୀପ ବିରୁଦ୍ଧରେ ତା'ର ଦୀର୍ଘଦିନର ଅଭିମାନ ଓ ଅଭିଯୋଗର ଫର୍ଦ୍ଦଗୁଡିକୁ । ସିପ୍ରାର କମନୀୟ ମୁଖମଣ୍ଡଳକୁ ଦୁଇ ହାତ ପାପୁଲିରେ ତୋଳିଧରି ତା'ର ଖୋଜିଲା ଖୋଜିଲା ଆଖିକୁ କିଛି ସମୟ ନିରିକ୍ଷଣ କଲା ପ୍ରଦୀପ ଏବଂ ତା' କପାଳରେ ଆଙ୍କିଦେଲା ଚୁମ୍ବନଟିଏ ।

" ଉଁ ହୁଁ, ମୁଁ କ'ଣ ଛୋଟ ଛୁଆ ?" ଫିକ୍ କରି ହସି ଦେଲା ସିପ୍ରା ।

" ବାସ୍, ଆଉ ଅଧିକ ଆଶା କରନାହିଁ ।"

" ଆଃ, ପ୍ରଦୀପ ! ବହୁତ ଭୋକ ଲାଗୁଛି । ମତେ କିଛି ଖାଇବାକୁ ଦିଅନା ।" ସିପ୍ରାର ଆଖି ନିସ୍ତେଜ ହୋଇ ଆସୁଥିଲା ।

" ତୁମର ଏ ଅସରନ୍ତି କ୍ଷୁଧା ପାଇଁ ଏଠି ଖାଦ୍ୟ ନାହିଁ ।" ପ୍ରଦୀପ ଆଉ ଗୋଟିଏ ମିଠା ସିପ୍ରାର ପାଟିରେ ଗୁଞ୍ଜିଦେଲା ।

" ଆଃ, ମତେ ନିରାଶ କରନି ପ୍ରଦୀପ ।"

" ତମେ ବହୁତ କ୍ଲାନ୍ତ ହୋଇଛ, ଶୋଇ ପଡିବ ଆସ ।" ସିପ୍ରାକୁ ଭିଡି ନେଇ ବେଡ୍ ଉପରେ ଶୁଆଇ ଦେବାକୁ ଚେଷ୍ଟା କଲା ପ୍ରଦୀପ କିନ୍ତୁ ସିପ୍ରାର ବାହୁ ବନ୍ଧନରୁ ମୁକୁଳି ପାରିନଥିଲା । ସିପ୍ରା ଅତିମାତ୍ରାରେ ଉତ୍ତେଜିତ ହୋଇ ପଡୁଥିଲା । ତା'ର ଉତ୍ତେଜିତ ଆଙ୍ଗୁଠି ଗୁଡାକ ପ୍ରଦୀପର ବକ୍ଷ ସ୍ପର୍ଶ କରିବା ମାତ୍ରେ ପ୍ରଦୀପର ହୃତ୍‌ସ୍ପନ୍ଦନ ଦ୍ବିଗୁଣିତ ହେବାକୁ ଲାଗିଲା । ସିପ୍ରାର ହାତ ଖସୁଥାଏ ତଳକୁ ତଳକୁ , ଆହୁରି ତଳକୁ । ପ୍ରଦୀପ ଓ ସିପ୍ରା ଉଭୟେ ଉତ୍ତେଜନାରେ କମ୍ପୁଥିଲେ ।

" ବାସ୍ ସିପ୍ରା, ବାସ୍ । ଆଉ ଅଧିକ ସୁଯୋଗ ତୁମକୁ ଦିଆଯିବନି ।"

" ମୁଁ ଆଜି କିଛି ଶୁଣିବିନି ପ୍ରଦୀପ । କୌଣସି ବନ୍ଧନ ମାନିବିନି । ମୋ ହାତ ଛାଡି ଦିଅ ।"

" ନା ସିପ୍ରା, ମୋ କଥା ମାନ । ସୁନା ପିଲାଟି ପରି ଶୋଇଯାଅ ।"

" ତୁମକୁ ମୋ ରାଣ ପ୍ରଦୀପ, ମୋତେ ବାଧା ଦିଅନି ।"

ଉଭୟଙ୍କ ଟଣା ଓଟରା ଭିତରେ ଅନନ୍ୟୋପାୟ ହୋଇ ସିପ୍ରା ଗାଲରେ ଗୋଟିଏ ଶକ୍ତ ଚାପୁଡ଼ା ମାରିବାକୁ ବାଧ୍ୟ ହୋଇଥିଲା ପ୍ରଦୀପ ।

" ଆଃ, ତମେ ମୋତେ ମାରିପାରିଲ ପ୍ରଦୀପ ?"

ସିପ୍ରା କଇଁ କଇଁ ହୋଇ କାନ୍ଦି ଉଠିଲା । ପ୍ରଦୀପ ଚୁପ୍ ଚାପ୍ ଶୋଇ ରହିଥାଏ ସମସ୍ତ ଉତ୍ତେଜନାକୁ ଶକ୍ତ ଭାବରେ ଚାପିରଖି ।

ମନରୁ ଉଗ୍ର ଉତ୍ତେଜନା, ଆଖିରୁ ହିଂସ୍ର ପ୍ରତିହିଂସା ଏବଂ ଛାତିରୁ ଅସରନ୍ତି କୋହ ପ୍ରଶମିତ ହେବାପରେ ସିପ୍ରା ବସିବାକୁ ଚେଷ୍ଟା କଲା ପ୍ରଦୀପକୁ ସାମ୍ନାକରି । ନିଦ୍ରାଗ୍ରସ୍ତ ପ୍ରଦୀପର ଦୁଇଆଖି କୋଣରୁ ଲୁହ ବୋହି ଆସି ତକିଆ ପର୍ଯ୍ୟନ୍ତ ଅତିକ୍ରମ କରିଯାଇଥିଲା । ସିପ୍ରା ବ୍ୟସ୍ତ ବିବ୍ରତ ହୋଇଉଠିଲା । ସେ ପ୍ରଦୀପର ଶକ୍ତ ଚାପୁଡ଼ା ଆଘାତକୁ ଯେତେ ସହଜରେ ସହ୍ୟ କରିନେଇଥିଲା, ପ୍ରଦୀପର କୋମଳ ଲୁହ ଧାରକୁ ଏତେ ସହଜରେ ସହ୍ୟ କରିପାରି ନଥିଲା । ସେ ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଥିଲା । ଲୁହ ଧାରକୁ ତା' ପଣତ କାନିରେ ପୋଛି ଦେଇ ପ୍ରଦୀପର କପାଳରେ ଶେଷ ଚୁମ୍ବନଟି ଆଙ୍କିଦେଲା ଠିକ୍ ଯେମିତି ଜଳଖିଆ ପର୍ବରେ ତା' କପାଳରେ ପ୍ରଦୀପ ଆଙ୍କିଦେଇଥିଲା ସେ ଦିନର ପ୍ରଥମ ଚୁମ୍ବନଟି ।

" ପ୍ରଦୀପ୍, ଏ ପ୍ରଦୀପ୍ , ଆରେ ଉଠ ନା , ଚା' ପିଇବ ଉଠ ।"

ପ୍ରଦୀପ ଆଖି ଖୋଲି ଚାହିଁଲା । ବାଳ ସୂର୍ଯ୍ୟର ଶୀତଳ କିରଣ ଘର ଭିତରେ ବିଛାଡ଼ି ହୋଇ ପଡ଼ିଥାଏ । ଚା' କପଟିଏ ହାତରେ ଧରି ସିପ୍ରା ତା' ମୁହଁକୁ ଅପଲକ ନୟନରେ ଚାହିଁ ରହିଥାଏ, ସତେ ଯେପରି ଅନେକ କିଛି ହଜିଲା ସ୍ମୃତିକୁ ସେ ଖୁବ୍ ଖୋଜୁଛି ତା'ରି ମୁଖ ମଣ୍ଡଳରେ । ସିପ୍ରାର ମୁଖମଣ୍ଡଳ ଅଖଣ୍ଡ ପ୍ରଶାନ୍ତିରେ ଭରପୁର ଥିଲେ ମଧ୍ୟ ପ୍ରଦୀପ ତାକୁ ଠିକ୍ ଭାବରେ ସାମ୍ନାକରି ପାରୁ ନ ଥାଏ । ମୁହଁ ତଳକୁ କରି ଶାନ୍ତ ଭାବରେ ଚା' କପ୍‌ଟି ଶେଷ କରିବାରେ ଲାଗିଥାଏ ପ୍ରଦୀପ ।

" ଗତ ରାତିରେ ଦୁର୍ଘଟଣା ପାଇଁ ମୁଁ ବହୁତ ଦୁଃଖିତ ସିପ୍ରା ।"

" ଏଥିରେ ତମର ଦୁଃଖ କରିବାର କ'ଣ ଅଛି । ବରଂ ମୁଁ ଦୁଃଖିତ ଯେ ତମ ସାନିଧ୍ୟ ଲାଭରୁ ମୁଁ ବଂଚିତ । କିନ୍ତୁ ତମର କ'ଣ ହୋଇଛି ପ୍ରଦୀପ ? କ'ଣ ପାଁଇ ତମର ଏ ପରିବର୍ତ୍ତନ । କ'ଣ ପାଇଁ ତମର ଆତ୍ମଗୋପନ ? ଯେଉଁ ପ୍ରଦୀପ ଦିନେ ସିପ୍ରାର ସାନିଧ୍ୟ ପାଇଁ ପାଗଳ ହୋଇଉଠୁଥିଲା ସେହି ପ୍ରଦୀପ ଆଜି.... । " ସିପ୍ରାର ଦୁଇଆଖି କୋଣରେ ଲୁହ ଜକେଇ ଆସିଥିଲା । ପ୍ରଦୀପ ଦୀର୍ଘଶ୍ୱାସଟିଏ ଟାଣି ଖାଲିକପ୍‌ଟି ତଳେ ରଖିଦେଇ ଝରକା ଫାଙ୍କରେ ବାଳ ସୂର୍ଯ୍ୟକୁ ଅପଲକ ନୟନରେ ଚାହିଁ ରହିଥାଏ ।

"ମୁଁ ଆଜି ଘରକୁ ଫେରିଯିବି । ଇଣ୍ଟରଭିଉ ପରେ ଫେରନ୍ତା ଟ୍ରେନ୍‌ରେ ମୁଁ ଚାଲିଯିବି । ହୁଏତ ତମ ସହିତ ଆଉ କେବେ ଏ ଜନ୍ମରେ ଦେଖା ହୋଇ ନ ପାରେ । ତଥାପି ଅବଶିଷ୍ଟ ଜୀବନ ମୁଁ ତୁମକୁ ହିଁ ପ୍ରତୀକ୍ଷା କରିବି । ଏ ଜନ୍ମରେ ନହେଲେ ମଧ୍ୟ ପର ଜନ୍ମ ପାଇଁ

ଭରସା ରଖିବି । କିନ୍ତୁ ତମ ଗତି ପଥରେ ପ୍ରତିବନ୍ଧକ ହେବାକୁ ମୁଁ ଚାହେଁନା । ହେଲେ ଯିବା ପୂର୍ବରୁ ମୋର ଗୋଟିଏ ଛୋଟ ଅନୁରୋଧ ରଖିବ ପ୍ରଦୀପ ? ତମର ସନ୍ୟାସ ବ୍ରତର କାରଣ ସମ୍ପର୍କରେ ଜାଣିବାର ଆଗ୍ରହ ମୋର ନାହିଁ । କାରଣ, ମୁଁ ତୁମକୁ ଚାହିଁଥିଲି, ଚାହିଁଥିଲି ତମର ପ୍ରେମକୁ, ପ୍ରଣୟକୁ । ମୋର ଏ ଶେଷ ଅନୁରୋଧ କ'ଣ ରଖିବନି ପ୍ରଦୀପ ?''

"କୁହ ।" ମୁହଁ ଉପରକୁ ଟେକି ସିପ୍ରାକୁ ଚାହିଁଲା ପ୍ରଦୀପ । ପ୍ରଦୀପର ସେ ମୁହଁ ଖୁବ୍ ଅସହାୟ ଲାଗୁଥିଲା ସିପ୍ରାକୁ ।

"ଯେଉଁ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ଚେଷ୍ଟାକରି ମଧ ମୁଁ ପହଞ୍ଚି ପାରିନି, ଯାହାର ପ୍ରତୀକ୍ଷାରେ ଦୀର୍ଘ ଦଶ ବର୍ଷ ମୁଁ ସନ୍ୟାସିନୀ ବ୍ରତ ଅବଲମ୍ବନ କରି ଆସିଛି , ଯାହାକୁ ଥରଟିଏ ସ୍ପର୍ଶ କରିବା ପାଇଁ ଚେଷ୍ଟାକରି ତମ ହାତରୁ ଶକ୍ତ ଚାପୁଡ଼ାଏ ଖାଇଛି, ସେ ଲକ୍ଷ୍ୟସ୍ଥଳକୁ ମୁଁ ଥରଟିଏ ମାତ୍ର ଶେଷ ଦର୍ଶନ କରିବାକୁ ଚାହେଁ ।"

ଏଭଳି ଗୋଟିଏ କଳ୍ପନା ବାହାରର ପ୍ରଶ୍ନ ପାଇଁ ପ୍ରଦୀପ ଆଦୌ ପ୍ରସ୍ତୁତ ନଥିଲା । ସେ ବ୍ୟସ୍ତ ବିବ୍ରତ ହୋଇ ଉଠିଲା । କିଛି କ୍ଷଣ ପରେ ସ୍ଥିର ହୋଇ ପୁଣି ବିଛଣାରେ ପଡ଼ିରହିଲା ।

"ଠିକ୍ ଅଛି । ତମର ଶେଷ ଇଛା ପୁରଣ କରିବାକୁ ମୁଁ ବାଧ୍ୟ ।" ଦୀର୍ଘଶ୍ୱାସ ଟାଣି ଆଖି ବନ୍ଦ କରି ଶୋଇରହିଲା ପ୍ରଦୀପ । ମୁହଁରେ ହସର ଫଗୁଣ, ମନରେ ଅସରନ୍ତି ଉତ୍ତେଜନା ଏବଂ ଆଖିରେ ଆଖିଏ କାମନା ନେଇ ସିପ୍ରା ଆଗେଇଲା ତା'ର ଲକ୍ଷ୍ୟ ସ୍ଥଳକୁ ଶେଷ ଦର୍ଶନ କରିବା ପାଇଁ । ପ୍ରଦୀପ ଅଙ୍ଗରୁ ପରସ୍ତ ପରସ୍ତ ପୋଷାକର ସ୍ତର ଖୋଲି ସାରିବା ପରେ ସେ ସ୍ତବ୍ଧ ହୋଇଯାଇଥିଲା । ତା'ର ଉତ୍ତେଜିତ ଆଖିଦୁଇଟା ଆପେ ଆପେ ଚିପି ହୋଇ ବନ୍ଦ ହୋଇଗଲା । ତା'ର ଚିର ଇପ୍‌ସିତ ସକଳ କାମନାର ଉତ୍ସକୁ ତା'ର ନିର୍ଦ୍ଧାରିତ ସ୍ଥାନରେ ସେ ପାଇ ନଥିଲା ।

"ଇସ୍, ତମର ଏ କ'ଣ ହେଲା ପ୍ରଦୀପ ?"

ସେତେବେଳକୁ ସବୁତକ କାମନା, ବାସନା, ଉତ୍ତେଜନା, ଆଶା, ଆକାଂକ୍ଷା, ଭାବ ପ୍ରବଣତା ଲୋତକର ଧାରଟିଏ ହୋଇ ବହି ଯାଉଥିଲା ସିପ୍ରାର ଆଖି କୋଣରୁ । ପ୍ରଦୀପ ସେମିତି ନିସ୍ତେଜ ହୋଇ ଶୋଇ ରହିଥାଏ ପଲଙ୍କ ଉପରେ । ତା'ର ଦୁଇ ଆଖି କୋଣରୁ ଦୁଇଧାର ଲୁହ ବହି ଆସି ତକିଆକୁ ସ୍ପର୍ଶ କରିଥାଏ ଠିକ୍ ଯେମିତି ସିପ୍ରା ଲକ୍ଷ୍ୟ କରିଥିଲା ପୂର୍ବ ରାତ୍ରିରେ ।

ପ୍ରଦୀପର ପ୍ରସସ୍ତ ଛାତି ଉପରେ ଲୋଟି ପଡି ସିପ୍ରା ଖୋଜୁଥିଲା ପ୍ରଦୀପର ହଠାତ୍ ନିଖୋଜ ହୋଇଯିବାର କାରଣ, ସିପ୍ରାକୁ ଅବିଶ୍ୱାସର ଅନ୍ଧକାର ଭିତରେ ଛାଡି ଦେଇ ଯିବାର କାରଣ ଏବଂ କ୍ୟାନସର ରୋଗ ଉପରେ ଗଦା ଗଦା ବହି କିଣି ତାକୁ ଅଧ୍ୟୟନ କରିବାର କାରଣ । ଅନତି ଦୂରରୁ ଭାସି ଆସୁଥିଲା ଷ୍ଟେସନ୍ ଛାଡଥିବା ଟ୍ରେନ୍‌ର କର୍କଶ ସ୍ୱର ଲହରୀ ।



# ବାଘ ମୁଖା

ସେଦିନ ମୋର ଇଞ୍ଜିନିୟର ବନ୍ଧୁ ରାମ ରତନ ଦାସଙ୍କ ଅଫିସରେ ବସି ଦୁହେଁ ଚା' ପରିଇବା ସମୟରେ ଦେଶର ସାମ୍ପ୍ରତିକ ପରିସ୍ଥିତି ସଂପର୍କରେ ଆଲୋଚନା କରୁଥାଉ । ଅଳ୍ପକେତେ ମାସ ହେବ ମୁଁ ଜୟପୁର ସବ୍‌ଡିଭିଜନାଲ ହସ୍‌ପିଟାଲରେ ସ୍ତ୍ରୀରୋଗ ବିଶେଷଜ୍ଞ ଭାବରେ ଜଏନ୍ କରିଥାଏ । ତେଣୁ ପୁରୁଣା ବନ୍ଧୁମାନଙ୍କୁ ଖୋଜି ଖୋଜି ସାକ୍ଷାତ, ଆଳାପ ଆଲୋଚନା କରି ବଳକା ସମୟ କଟେଇବାରେ କିଛିଟା ଆନନ୍ଦ ମିଳୁଥାଏ ।

ଆମ ଆଲୋଚନାରେ ବାଧାସୃଷ୍ଟି କରି ଚାରିଜଣ ଲୋକ ପରଦା ଆଡେଇ ଅଫିସ୍ ଭିତରେ ପଶିଲେ । ଇଞ୍ଜିନିୟର ବନ୍ଧୁ ମୋର ହଠାତ୍ କେମିତି ଗୋଟାଏ ଅଡୁଆରେ ପଡ଼ିଲା ଭଳି ମୁଁ ଅନୁଭବ କଲି । ତାଙ୍କର ଭାବନା ଏବଂ ମୁଖମଣ୍ଡଳର ପରିବର୍ତ୍ତିତ ରେଖାଗୁଡ଼ିକୁ ସେ ଖୁବ୍ ସତର୍କତାର ସହ ଲୁଚାଇବାକୁ ଚେଷ୍ଟା କରୁଥିଲେ ମଧ୍ୟ ମୋ ଲକ୍ଷ୍ୟକୁ ଏଡାଇ ଦେଇ ପାରିନଥିଲା ।

" ଆଜ୍ଞା ନମସ୍କାର । ଆସନ୍ତୁ, ବସନ୍ତୁ " ବନ୍ଧୁ ମୋର ସେମାନଙ୍କୁ ସ୍ୱାଗତ କଲେ ।

ଆଗରେ ଥିବା ଲୋକଟିର ଅବସ୍ଥା ଏବଂ ଚେହେରା ଦେଖି ମତେ କେମିତି ଅଡୁଆ ଅଡୁଆ ଲାଗୁଥାଏ । ଯେ କୌଣସି ସଚେତନ ଲୋକଙ୍କୁ ସେଭଳି ଅସ୍ୱସ୍ତିକର ଲାଗିବା ସ୍ୱାଭାବିକ୍ । ଲୋକଟି ବେଶ ଲମ୍ବା ଚଉଡା । ଉଚ୍ଚତା ପ୍ରାୟ ସାଢେ ଛଅ ଫୁଟ୍ । କଳ୍ପା ମଟ୍ ମଟ୍ ହୃଷ୍ଟ ପୁଷ୍ଟ ଚେହେରା । ଖୁବ୍ ମୋଟା ମୋଡା ନିଶ ହଳେ । ଲାଲ୍ ଟକ୍ ଟକ୍ ବଡ ବଡ ଆଖି ଦି'ଟା ବେଶ ଭୟଙ୍କର ଲାଗୁଥାଏ । ଇସ୍ତ୍ରୀକରା ଖଦଡ ଟ୍ରାଉଜର ପଞ୍ଜାବୀକୁ କପାଳରେ ଲମ୍ବା ସିନ୍ଦୁର କଳି ତାକୁ ବେଶ୍ ମାନୁଥାଏ । ଲୋକଟା ଆକଣ୍ଠ ମଦ ପିଇ ଟଳି ଟଳି ହେଉଥାଏ । ତା' ହାକୁଟିରେ ଉତ୍କଟ ମଦଗନ୍ଧ ସେ ଅଫିସ କୋଠାରୀଟିକୁ ବେଶ ମହକାଉ ଥାଏ । ତା' ସାଙ୍ଗରେ ଥିବା ଆଉ ତିନିଜଣ ଡହରା ଟୋକାଙ୍କର ଅବସ୍ଥା ଏବଂ ଚେହେରା ମଧ୍ୟ ତଦ୍ରୂପ ।

" ଆମେ ଏଠିକି ବସିବାକୁ ଆସିନାହୁଁ । କେତେ ଜାଗା ଯିବାକୁ ହବ । ଚଲୋ ଫଟାଫଟ୍ ମାଲ ନିକାଲୋ । " ଲୋକଟାର ଅବସ୍ଥା ଏପରି ହୋଇଥାଏ ଯେ ଠିକ୍ ଭାବରେ କଥା ମଧ୍ୟ ସେ କହିପାରୁ ନଥାଏ ।

ଏପ୍ରକାର ଭାଷା ଜଣେ ଦାୟୀତ୍ୱପୂର୍ଣ୍ଣ ସରକାରୀ ଅଫିସରଙ୍କ ପ୍ରତି ପୁଣି ତାଙ୍କ ଅଫିସ ଭିତରେ ପ୍ରୟୋଗ କରାଯାଇପାରେ ଏକଥା ମୁଁ କଳ୍ପନା ମଧ୍ୟ କରିପାରୁ ନଥାଏ । ମୋ ଗୋଡ଼ ରକ୍ତ ମୁଣ୍ଡକୁ ଉଠିବା ଭଳି ମୁଁ ଅନୁଭବ କଲି । କିନ୍ତୁ କୌଣସି ବିଷୟରେ କିଛି ନ ବୁଝି ନ ଜାଣି

କିଚି ଗୋଟାଏ କହିଦେବା ଅନୁଚିତ ଭାବି ଚୁପ୍‌ଚାପ୍ ବସିରହିଲି ଏବଂ ସେମାନଙ୍କ ଅଭିନୟ ଦେଖିବାରେ ଲାଗିଲି । ସେତେବେଳକୁ ବନ୍ଧୁ ମୋର ମନିପର୍ସରୁ ତିନିଖଣ୍ଡି ଶହେଟଙ୍କିଆ ନୋଟ ବାହାର କରି କଣେଇ କଣେଇ ମତେ ଲକ୍ଷ୍ୟ କରୁଥାନ୍ତି ।

"ଆଜି ଏତିକି ରଖିଥାନ୍ତୁ ।" ଅନିଚ୍ଛା ସ୍ବତ୍ତ୍ବେ ହସୁଥାନ୍ତି ବନ୍ଧୁ ମୋର ।

"ହଇହୋ ଦାସ ବାବୁ । ଆମେ କ'ଣ ଭିକ ମାଗିବାକୁ ଆସିଛୁ ।"

"କ'ଣ କରିବା ଆଜ୍ଞା, ଏମାସ ଟିକିଏ ପରିସ୍ଥିତି ଭଲ ନାହିଁ ।"

"ହଉ, ହଉ, ଠିକ୍ ଅଛି । ଆସନ୍ତା ମାସକୁ ଯେମିତି ଏମିତିକା ବାହାନା ନ ବାହାରେ । ଆମେ ଆସୁଛୁ ।" କହି କହି ବାହାରକୁ ଚାଲିଗଲେ ।

"ଓହୋ, କେମିତି ଯେ ଏ ଲୋକମାନଙ୍କ ଠାରୁ ମୁକ୍ତି ମିଳିବ ? ଏମାନେ ଯାହା ଉତ୍ପାତ କରୁଛନ୍ତି , କୌଣସି ଭଦ୍ରଲୋକ ଏଠାରେ ଚଳିବା କଷ୍ଟକର । ଯାଙ୍କ ନେତା ହେଉଚି ନରି ମହାନ୍ତି । ଟିକିଏ ପୂର୍ବରୁ ଏଇଠି ବସି ଟଳଟଳ ହେଉଥିଲା । ଘର ତା'ର କୋଉ ମଫସଲ ଅଞ୍ଚଳର ଫତେପୁର ଗାଁରେ କିନ୍ତୁ ଏ ସହର ଭିତରେ ମଧ ତା'ର ଜୁଲମ ଅତି ଅସହ୍ୟ । ଲୋକଟା ଘୋଡା ମଦୁଆକୁ ଦୁର୍ଦ୍ଦାନ୍ତ ଗୁଣ୍ଡା । କିନ୍ତୁ ମନ୍ତ୍ରୀଙ୍କର ଖାସ୍ ଲୋକ । ତେଣୁ ଡରି ମରି ଯାହା କହୁଛନ୍ତି ମାନିବାକୁ ବାଧ । ଆଜି ଏତେ ଦିଅ କାଲି ସେତେ ଦିଅ । ହଜାରେ ରକମର ଚାନ୍ଦା । ବଡ ଅତିଷ୍ଠ ଲାଗିଲାଣି । ଯାହା ନେଉଚନ୍ତି ତାଙ୍କ ମାଲ ପିଆକୁ ନିଅଣ୍ଟ ।" ବନ୍ଧୁ ମୋର ସଫେଇ ଦେଇ ଚାଲିଥାନ୍ତି ।

"ଏମାନଙ୍କ ଜୁଲମ କ'ଣ କେବଳ ଆପଣଙ୍କ ଉପରେ ?"

"ସେମାନଙ୍କ ପଛେ ପଛେ ଯଦି ଫଲୋ କରିବେ , ତେବେ ଯାଇ ଜାଣିବେ ତାଙ୍କ କାରିବାର କ'ଣ ? କୌଣସି ଗୋଟିଏ ଅଫିସ ବାଦ୍ ଦେଉ ନାହାଁନ୍ତି । ବିଶେଷ କରି ଆମ ଇଞ୍ଜିନିୟରିଂ ସଂସ୍ଥା, କେତେଜଣ ଡାକ୍ତର, ସପ୍ଲାଏ ସଂସ୍ଥା, ବ୍ଲକ ସଂସ୍ଥା, କମରସିଆଲ ଟ୍ୟାକ୍ସ ସଂସ୍ଥା ଉପରେ ଏମାନଙ୍କର ସବୁବେଳେ ବଡ ନଜର । ଅଫିସରମାନେ ଏମାନଙ୍କ ଦୌରାତ୍ମ୍ୟରେ ତ୍ରାହି ତ୍ରାହି ଡାକ ଛାଡୁଛନ୍ତି ।"

"ତା ହେଲେ ଏଠାକାର ଅଫିସର ମାନେ ଏକଜୁଟ ହୋଇ ସେମାନଙ୍କର ମୁକାବିଲା କରୁନାହାନ୍ତି କାହିଁକି ? ମୋର ତ ଇଚ୍ଛା ହେଉଥିଲା ଦିଓଟି ମୁଥିମାରି ଲୋକଟାର ଆଗଦାନ୍ତ ଗୁଡାକ ସବୁ ଝଡେଇ ଦେଇଥାଆନ୍ତି ।"

"ଏଠାକାର ଅଫିସରମାନଙ୍କ ମନୋବୃତ୍ତି ଭଲ ନୁହେଁ । ସମସ୍ତେ ନିଜ ନିଜ ଧନ୍ଦାରେ ଫାଇଦାରେ ବ୍ୟସ୍ତ । କାହାରି ମନ କାହାରିକୁ ପାଏ ନାହିଁ । ସେଇଥିପାଇଁ ତ ଏ ଗୁଣ୍ଡା ମଦୁଆ ଦଳ ସମସ୍ତଙ୍କ ପଛରେ ଲାଗିଛନ୍ତି ।"

କଥାଗୁଡାକ ମତେ ଠିକ୍ ମନେ ହେଉଥିଲେ ମଧ୍ୟ ବଡ ଅଖାତୁଆ ଲାଗୁଥିଲା । ବନ୍ଧୁଙ୍କ ଠାରୁ ବିଦାୟ ନେଇ ଘରକୁ ଫେରିଲି ଭାରାକ୍ରାନ୍ତ ମସ୍ତିଷ୍କ ନେଇ । ସେଦିନ ରାତିଟା କେମିତି ଭୀଷଣ ଅସାନ୍ତିରେ କଟିଲା । ଖାଲି ଛକ ଛକ ଲାଗୁଥାଏ । କାଳେ ନରହରି ମହାନ୍ତି ତା' ଦଳକୁ ଧରି ମୋ' ଘର ଆଡେ ମାଡି ଆସିବ କି ? ମୁଁ ତ ସେମାନଙ୍କ ଜବରଦସ୍ତିଆ ବ୍ୟବହାରକୁ ଆଦୌ ସହ୍ୟ କରି ପାରିବି ନାହିଁ । ଯାହାହେଲେ ମଧ୍ୟ ମୁକାବିଲା କରିବି । ପୁଣି ଆଶଙ୍କା ମଧ୍ୟ ଲାଗୁଥାଏ ଯେ ମୁହାଁ ମୁହିଁ ହେଇଗଲେ କ'ଣ ଗୋଟାଏ ଅପ୍ରିତୀକର ପରିସ୍ଥିତି ସୃଷ୍ଟି ହେଇଯାଇପାରେ । ତେବେ ଦେଖାଯାଉ, ଯାହା ଭାଗ୍ୟରେ ଥିବ ହେବ । ସେ ବିଷୟରେ ଆଉ ଅଧିକ ଗୁଡାଏ ଚିନ୍ତା କରି ମୁଣ୍ଡଟାକୁ ଭାରାକ୍ରାନ୍ତ କରିବା ଅନୁଚିତ୍ ।

ପରଦିନ ସକାଳୁ ସକାଳୁ କାହାର କବାଟ ବାଡାରେ ପାଣିଚିଆ ନିଦଟା ଚଟାଙ୍ଗଟ୍ ଭାଙ୍ଗିଗଲା । ଟିକିଏ ଡେରି ପର୍ଯ୍ୟନ୍ତ ଶୋଇବା ମୋର ଗୋଟାଏ ବଦଭ୍ୟାସ । ମୁଁ କବାଟ ଖୋଲିବା ମାତ୍ରେ ଲୋକଟି ବଡ ବ୍ୟସ୍ତ ହୋଇ ମତେ ଅନୁରୋଧ କରିବାକୁ ଲାଗିଲା, "ଘରେ ମୋ' ସ୍ତ୍ରୀ ଦେହ ଭୀଷଣ ଖରାପ । ଡାକ୍ତରଖାନା ଆଣିବା ସମ୍ଭବ ନୁହେଁ । ଦୟାକରି ମୋର ଘରକୁ ଚାଲନ୍ତୁ ସାର୍ ।"

"ଘର କେତେ ବାଟ ?"

ଟିକିଏ ବେଶୀଦୂର ଆଜ୍ଞା । ପ୍ରାୟ ପଚିଶ କିଲୋମିଟର ହବ । ଆପଣଙ୍କର ତ ସ୍କୁଟର ଅଛି । ମୁଁ ସବୁ ଖର୍ଚ୍ଚ ବହନ କରିବି ।"

"ଘର କୋଉ ଗାଁରେ ?"

"ଫତେପୁର ଆଜ୍ଞା । ରାସ୍ତା କିନ୍ତୁ ଭଲ ।" ଲୋକଟି କଣ୍ଠରେ ବ୍ୟସ୍ତତା ଭରି ରହିଥିଲା ।

ଫତେପୁର ନାଁଟା ଶୁଣି ହଠାତ୍ ମୋର ନରହରି ମହାନ୍ତି କଥା ମନେ ପଡିଗଲା । ମନଟା ମଧ୍ୟ ବିକ୍ଷେଇ ଉଠିଲା । ମୁଣ୍ଡଟା ଗରମ ଲାଗିଲା । ଯେଉଁ ଗାଁରେ ଏଭଳି ଅସଭ୍ୟ ବର୍ବର ଲୋକ ରହିପାରନ୍ତି , ସେଠାକୁ ଯିବା ଆଦୌ ଉଚିତ୍ ହବ ନାହିଁ । କିନ୍ତୁ ଏ ଲୋକଟିତ ଭଦ୍ର ଲୋକ ଭଳି ଜଣା ପଡୁଛି । ଯାର ଦୋଷ ବା କ'ଣ ? ଟାଉଟର ନରହରି ମହାନ୍ତି ପାଇଁ ଏ ଲୋକଟିର ନିରୀହା ସ୍ତ୍ରୀ ଦଣ୍ଡ ପାଇବ କାହିଁକି ? ନାଁ, ବରଂ ଫତେପୁର ଯିବା ଉଚିତ୍ । ଅନ୍ତତଃ ନରହରି ମହାନ୍ତିର ଅସଲ ଚେହେରାଟା ତା' ଘରେ କିମ୍ବା ତା' ଗାଁରେ ଦେଖି ଆସିବା ଉଚିତ୍ ।

ଅଙ୍କା ବଙ୍କା କଚା ମୋରମ୍ ରାସ୍ତା ଦେଇ ସ୍କୁଟର ଚାଲିଥାଏ ଗାଁ ପରେ ଗାଁ ଅତିକ୍ରମ କରି । ଲୋକଟି ପଛ ସିଟ୍‌ରେ ବସି ମତେ ରାସ୍ତା ଦେଖାଉଥାଏ । ନିହାତି ଅନୁନ୍ନତ ଅଞ୍ଚଳ

ହେଲେବି ରାସ୍ତା କଡରର ସବୁଜ ଫସଲ, ସକାଳୁଆ ପ୍ରାକୃତିକ ଗ୍ରାମ୍ୟ ପରିବେଶ ବେଶ୍ ଉପଭୋଗ୍ୟ ହେଉଥାଏ ।

" ଫତେପୁର ଆଉ କେତେ ବାଟ ?" ମୁଁ ପ୍ରଶ୍ନ କଲି ।

"ଆଉ ଅଳ୍ପ ବାଟ ସାର୍ । ଏଇ ଆଗ ଗାଁର ପର ଗାଁଟା ।"

" ଆଚ୍ଛା, ତମେ ନରହରି ମହାନ୍ତିକୁ ଜାଣିଛ ?"

" ଆଜ୍ଞା ବାବୁଙ୍କୁ ନ ଜାଣିଛି କିଏ ? ବାବୁଙ୍କ ପାଖରେ କ'ଣ କାମ ଅଛି କି ?"

" ନାଇଁ, ଏମିତି ପଚାରୁଥିଲି । ତାଙ୍କ ଘରଟା ଟିକିଏ ଦେଖେଇ ଦବତ ।"

" ଗାଁ ମୁଣ୍ଡର ପ୍ରଥମ ସାହିରେ ତାଙ୍କ ଘର । ମୁଁ ଚିହ୍ନେଇ ଦେବି ।"

ଗୋଟାଏ ବିଷାକ୍ତ ଧାରଣା ନେଇ ନରହରି ମହାନ୍ତି ବିଷୟ ଚିନ୍ତା କରୁ କରୁ ସ୍କୁଟର ଯାଇ ଫତେପୁର ମାଟି ଛୁଇଁଲା । ପ୍ରଶସ୍ତ ଗାଁ ଦାଣ୍ଡ । ସଜେଇଲା ଭଳି ଧାଡିକି ଧାଡି ଘର । ବେଶ୍, ସୁନ୍ଦର ଗାଁ ଟିଏ ପରି ଲାଗିଲା ।

"ସାର, ଏଇଟା ବାବୁଙ୍କ ଘର ।" ହଠାତ୍ ମୋ' ଅଜାଣତରେ ସ୍କୁଟର ବ୍ରେକ୍ ଜୋରରେ ଚାପି ହୋଇଗଲା । ଗାଡିଟା ତ ଅଟକି ଗଲାଣି, କ'ଣ କରିବି ବୋଲି ଚିନ୍ତା କରିବାକୁ ଲାଗିଲି ।

"ବାବୁଙ୍କ ଘରକୁ ଯିବେ ?" ଲୋକଟି ପଛ ସିଟରୁ ଓହ୍ଲାଇ ସାରିଥିଲା ।

ଯିବାଟା ଉଚିତ୍ ହବକି ନାହିଁ ଚିନ୍ତା ଅବସରରେ ଗାଡିର ଷ୍ଟାଣ୍ଡ ଲାଗାଇ ସାରିଥିଲି । ଠିକ୍ ଅଛି, ଆସିଛି ଯେତେବେଳେ ଲୋକଟାକୁ ଭେଟିଗଲେ କ୍ଷତି କ'ଣ ? ମନେ ମନେ ଲୋକଟାକୁ ଦେଖାକରିଯିବାକୁ ସ୍ଥିର କରିନେଲି ।

" ତମେ ଯାଇ କୁହ, ଡାକ୍ତର ବାବୁ ଆସିଛନ୍ତି ।"ଲୋକଟିକୁ ନିର୍ଦ୍ଦେଶ ଦେଇ ଆଗରେ ପଠାଇଲି । ପଛେ ପଛେ ମୁଁ ମଧ ଚାଲିଲି ।

" ଆସନ୍ତୁ ସାର , ଭିତରେ ବସନ୍ତୁ । ବାବୁ ପୂଜା ଘରେ ଅଛନ୍ତି । ସାଙ୍ଗେ ସାଙ୍ଗେ ଆସିବେ ।" ଲୋକଟି ଚଟାପଟ୍ ଫେରି ଆସି କହିଲା ।

ମତେ ଗୋଟାଏ ଶକ୍ତ ଧକ୍କା ଲାଗିଲା । ଗୁଣ୍ଡା ମଦୁଆ ନରି ମହାନ୍ତି ପୁଣି ପୂଜା ଅର୍ଚ୍ଚନା । କୌଣସି ଭୁଲ ଲୋକ ଘରକୁ ପଶି ଆସିନାହିଁ ତ ? ସେତେବେଳକୁ ଘର ବାରଣ୍ଡାରେ ଗୋଡ ଦେଇ ସାରିଥିଲି । ଫେରି ଆସିବାକୁ ମଧ ଉପାୟ ନଥିଲା । ଘର ଭିତରେ ପଶି ମାନସିକ ଦ୍ୱନ୍ଦ ଭିତରେ ସୋଫା ଉପରେ ବସିପଡିଥିଲି ଦ୍ରୁତ୍ତଂ କ୍ରମରେ । ବିଭିନ୍ନ ଚିନ୍ତାରେ ମୁଣ୍ଡଟା ଭାରାକ୍ରାନ୍ତ ହୋଇ ଉଠୁଥାଏ । ଯେଉଁ ଲୋକଟାର ଚେହେରାକୁ ମୁଁ

ଆଦୌ ସହ୍ୟ କରିପାରେ ନାହିଁ, ତା' ସହିତ କେମିତି, କି ଭାଷାରେ , କ'ଣ ଯେ କଥା ହେବି, ମନେ ମନେ ସ୍ଥିର କରୁଥାଏ ।

"ଆଜ୍ଞା ନମସ୍କାର, ମୋ' ଗରୀବ କୁଡ଼ିଆରେ କେମିତି ଆପଣଙ୍କ ପାଦ ପଡ଼ିଲା ।" ସ୍ୱୟଂ ନରହରି ମହାନ୍ତି ଯୋଡ଼ ହସ୍ତରେ ପଶି ଆସୁଛନ୍ତି ଡ୍ରଇଂ ରୁମ୍ ଭିତରକୁ । ମୁଁ ନିର୍ନିମେଷ ନୟନରେ ଚାହିଁ ରହିଥାଏ ଶ୍ରୀ ମହାନ୍ତିଙ୍କୁ । ସେଇ ଚେହେରା, ସେଇ ଆଖି, ସେଇ ନିଶ, ତଫାତ୍ କେବଳ ଭାଷାରେ , ବ୍ୟବହାରରେ ଏବଂ ପରିପାଟିରେ । ଲମ୍ବା ସିନ୍ଦୁର ଢଳି ଜାଗାରେ ସୁନ୍ଦର ଚନ୍ଦନ ଟୋପାଟିଏ, ଖଦଡ ଟ୍ରାଉଜର ପଞ୍ଜାବୀ ପରିବର୍ତ୍ତେ ମଠା ଧୋତି ସାଙ୍ଗକୁ କାନ୍ଧରେ ମଠାର ଚଦର ଏବଂ ଆଜାନୁଲମ୍ବିତ ଧୋବ ଫରଫର ପଇତାର ଗୁଚ୍ଛ । ସାକ୍ଷାତ ମନ୍ଦିରର ବଡ ପଣ୍ଡା । ମୁଁ ମନେମନେ ଆଶ୍ଚର୍ଯ୍ୟ ହେଉଥିଲି । ମୋ' ଅଜାଣତରେ ପ୍ରତିନମସ୍କାର ଉଦ୍ଦେଶ୍ୟରେ ହାତ ଦୁଇଟା ମଧ୍ୟ ଉଠିଯାଇଥିଲା । ନରହରି ମହାନ୍ତି ଅନ୍ୟ ଏକ ସୋଫା ଅଧିକାର କରି ସାରିଥିଲେ ।

"ଆପଣ ଅଲ୍ପ କେଇମାସ ହେବ ଆସିଛନ୍ତି, ମୁଁ ଜାଣିଛି । ଆପଣଙ୍କ ବିଷୟରେ କେତେ କଥା ମଧ୍ୟ ଶୁଣିଛି । ଯାହା ହଉ ଆଜି ବଡ଼ ଭାଗ୍ୟ ଆପଣଙ୍କ ସହିତ ଦେଖା ହେଲା ପୁଣି ମୋ ଘରେ ।" ହସି ହସି କହି ଚାଲିଥାନ୍ତି ନରହରି ମହାନ୍ତି ।

ମୁଁ କିନ୍ତୁ ଭାବୁଥିଲି, ଯେଉଁ ଲୋକକୁ ଗୋଟାଏ ସବ୍‌ଡିଭିଜନ୍‌ର ସବୁ ଅଫିସର ସଲାମ୍ ବଜାନ୍ତି ଏବଂ ସେମାନଙ୍କ ପ୍ରତି ଏ ଲୋକର ବ୍ୟବହାର ମୁଁ ନିଜ ଆଖିରେ ଦେଖିଛି, ଅଥଚ ଏ ଲୋକର ବ୍ୟବହାରରେ ଆଜି ପରିବର୍ତ୍ତନ କାହିଁକି ?

"ବାବୁ ଆମର ଭାରି ଭଲ ଲୋକ । ଗରିବ ଗୁରୁବାଙ୍କ ଭଲମନ୍ଦରେ ସବୁବେଳେ ପାଖରେ ଥାଆନ୍ତି । ଅଞ୍ଚଳରେ ଯାହା କିଛି ଉନ୍ନତି ହୋଇଛି କେବଳ ବାବୁଙ୍କ ପାଇଁ । ବାବୁ ନ ଥିଲେ ଆମେ ଆଜିଯାଏ ସେଇଭଳି ଅନ୍ଧାରି ମୁଲକରେ ପଡ଼ିଥାଆନ୍ତୁ ।" ଲୋକଟି ନରହରି ମହାନ୍ତି ଉପରେ ସାର୍ଟିଫିକେଟ୍ ଦେଇ ଚାଲି ଥାଏ । ଚାକର ଚା' କପ୍‌ଟିଏ ଆଣି ମୋ ପାଖରେ ରଖିଲା ।

"ଆପଣ ଚା' ପିଇବେ ନାହିଁ ?" ମୁଁ ପ୍ରଶ୍ନ କଲି ।

"କ୍ଷମା କରିବେ । ମୋର ସେ ସବୁ କିଛି ବଦଭ୍ୟାସ ନାହିଁ । ଚା', ପାନ, ସିଗାରେଟ୍ ଇତ୍ୟାଦି ମୋର କିଛି ଚଳେ ନାହିଁ । ଚା' ଛଡ଼ା ଆଜି ମୋର ଏକାଦଶୀ ଉପବାସ ।" ଶ୍ରୀ ମହାନ୍ତି ସଫେଇ ଦେଇଚାଲିଥାନ୍ତି ।

ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି । ଗତକାଲି ଏହି ଲୋକଟାକୁ ଯେଉଁଭଳି ମାତାଲ ଅବସ୍ଥାରେ ମୁଁ ନିଜ ଆଖିରେ ଦେଖିଛି ଅଥଚ ଏ ଲୋକ ଆଜି କହୁଛି ତା'ର କିଛି ବଦଭ୍ୟାସ ନାହିଁ । ନା, ଆଉ ଛାଡ଼ିବାର ନୁହେଁ ।

''ଗତିକାଲି ମୁଁ ଆପଣଙ୍କ ବନ୍ଧୁମାନଙ୍କ ସହିତ ଆପଣଙ୍କୁ ଇଂଜିନିୟର ରାମରତନ ଦାସଙ୍କ ଅଫିସରେ ଦେଖିଥିଲି, ଆପଣଙ୍କର ମନେ ଥାଇପାରେ । '' ଏଥର ବି' ପଦ ଶୁଣାଇଦେଲି । ଲୋକଟି ଟିକିଏ ମଧ ସଂକୋଚ ନ କରି ଖୁବ୍ ଜୋର୍‌ରେ ହସି ଉଠିଲା । ମୋତେ ଆହୁରି ଆଶ୍ଚର୍ଯ୍ୟ ଲାଗିଲା ।

''ମୋର ନକଲି ରୂପଟା ଦେଖିନେଇଛନ୍ତି ତା' ହେଲେ । ମଝିରେ ମଝିରେ ମାତାଲ ସାଜି ଏମିତି ଅଭିନୟ କରିବାକୁ ପଡ଼ିଥାଏ ଡାକ୍ତରବାବୁ । ଏ ଅଂଚଳରେ ଯାହାସବୁ ଉନ୍ନତି ମୂଳକ କାର୍ଯ୍ୟ ହୋଇଛି ବା ହେବାକୁ ଯାଉଛି ସେ ସବୁ ଆପଣମାନଙ୍କ ଭଳି ଅଫିସରଙ୍କ ଦାନରୁ ସମ୍ଭବ ହୋଉଛି । ଆଛା, ଆପଣ କୁହନ୍ତୁ ତ ଦେଖି, ମୁଁ ଯଦି ଅଭିନୟ ନ କରନ୍ତି ଅଫିସରମାନେ ମୋତେ ନା ଖାତିର୍ କରନ୍ତେ ନା ଚାନ୍ଦା ଦିଅନ୍ତେ । ଯେଉଁ ଅଫିସରମାନେ ଏହି ଅଂଚଳର ଲୋକଙ୍କୁ ଶୋଷଣ କରନ୍ତି, ଏ ଅଂଚଳକୁ ଆସୁଥିବା ସରକାରୀ ଅନୁଦାନକୁ ଲୁଟ୍ କରନ୍ତି, ସେମାନଙ୍କଠାରୁ କଳେ ବଳେ କୌଶଳେ କିଛି ଆଦାୟ କରି ଲୋକଙ୍କ ଉନ୍ନତି ପାଇଁ ଖର୍ଚ୍ଚ କରିବାରେ ଅସୁବିଧା କ'ଣ ? ଅଫିସରମାନଙ୍କର ଯଦି ଦାୟିତ୍ୱବୋଧ ରହନ୍ତା, ତେବେ ଆମର ଚରିତ୍ର, ଆମର ମାନବିକତାକୁ ସାମୟିକ ଭାବରେ ବନ୍ଧା ପକାଇ ସେମାନଙ୍କ ପଛରେ ଆମକୁ ଲାଗିବାକୁ ପଡ଼ୁନଥାନ୍ତା । ତା' ଛଡ଼ା ଆପଣ ଯଦି ଭାବୁ ଥାଆନ୍ତି ଏଥିରେ ମୋର ବ୍ୟକ୍ତିଗତ ଫାଇଦା ଅଛି, ତା' ହେଲେ ଆପଣ ଭୁଲ ବୁଝିଛନ୍ତି । ଏ ଅଂଚଳର ଲୋକଙ୍କର ଶୁଖିଲା ମୁହଁ ଭୋକିଲା ପେଟକୁ ସହ୍ୟ ନ କରି ପାରି ଆପଣମାନଙ୍କ ପାଖରେ ମୋ ମୁହଁ ଆଜି କଳା ପଡ଼ିଛି । ମୁଁ ଚାହିଁଥିଲେ ମୋ ନିଜ ପାଇଁ ବହୁତ କିଛି କରିପାରିଥାନ୍ତି । କିନ୍ତୁ ସେ ସବୁ ମୋର ଉଦ୍ଦେଶ୍ୟ ନଥିଲା । ଠାକୁରଙ୍କ କୃପାରୁ ମୋ ପୈତୃକ ସମ୍ପତ୍ତି ମୋ ପିଲାମାନଙ୍କ ପାଇଁ ଯଥେଷ୍ଟ ଦାନା କନା ଯୋଗାଇ ଆସିଛି । ମୋର ଅଧିକ କିଛି ଆବଶ୍ୟକତା ନାହିଁ । ଛାଡ଼ନ୍ତୁ, ବହୁତ ଗପାଗପି କରି ଆପଣଙ୍କୁ ବିରକ୍ତ କଲି ।'' ଲୋକଟି ଅତିମାତ୍ରାରେ ସେଣ୍ଟିମେଣ୍ଟାଲ ହୋଇପଡ଼ିବା ସଂଗେ ସଂଗେ ତା'ର ଦୁଇ ଆଖି କୋଣରେ ଦୁଇଟୋପା ଲୁହ ଜକେଇ ଆସିଥିଲା । ମୁଁ କେବଳ ସ୍ତବ୍ଧ ହୋଇ ଶୁଣୁଥିଲି ଶ୍ରୀ ମହାନ୍ତିଙ୍କ ବେଦ ଉଚ୍ଚାରଣ । ମନେ ମନେ ସେ ମହାନ୍ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ମୋର ନଇଁ ଆସୁଥିଲା ।

ମତେ ବିଦାୟ ଦେବା ପାଇଁ ନରହରି ମହାନ୍ତି ମୋର ସ୍କୁଟର ପର୍ଯ୍ୟନ୍ତ ଆସି ପୁଣି କେବେ ତାଙ୍କ ଘରକୁ ଆସିବାକୁ ନିମନ୍ତ୍ରଣ ମଧ ଜଣାଇଥିଲେ । ତାଙ୍କ ଚରିତ୍ରର ଆଗପଛ ବିଚାର କରୁ କରୁ ପୁଣି ଏକ ଭାରାକ୍ରାନ୍ତ ମସ୍ତିଷ୍କ ନେଇ ମୁଁ ଚାଲିଥିଲି ଫତେପୁର ଗାଁ ଦାଣ୍ଡରେ ଘର ପରେ ଘର ଅତିକ୍ରମ କରି ।



❋



ଗାଳ୍ପିକ ଡାକ୍ତର ରାଜ କିଶୋର ପଣ୍ଡାଙ୍କ ଜନ୍ମ ଯାଜପୁର ଜିଲ୍ଲାର ବରୀବ୍ଲକ୍ ଅନ୍ତର୍ଗତ ଭୁରୁଙ୍ଗା ଗ୍ରାମରେ ଉଣେଇଶ ପଚାଶ ମସିହା ଜାନୁୟାରୀ ମାସ ପନ୍ଦର ତାରିଖରେ । ପିତା ଉପେନ୍ଦ୍ର ନାଥ ପଣ୍ଡା ଓ ମାତା ପ୍ରମିଳା ପଣ୍ଡାଙ୍କ ଆଦର୍ଶ ଓ ପ୍ରେରଣାରେ ସଦା ଅନୁପ୍ରାଣୀତ । ସଂଗୀତ, ଅଭିନୟ, ସାହିତ୍ୟ ଓ ସମାଜସେବା ପ୍ରତି ବାଲ୍ୟକାଳରୁ ଆଗ୍ରହୀ । ଡାକ୍ତରୀ ଶିକ୍ଷାରେ ଏମ୍.ବି.ବି.ଏସ୍. ଡିଗ୍ରୀ ପରେ ଚକ୍ଷୁରୋଗରେ ଏମ୍.ଏସ୍. ଡିଗ୍ରୀ ହାସଲ । ବର୍ତ୍ତମାନ ଯାଜପୁର ଜିଲ୍ଲା ସଦର ମହକୁମା ଚିକିତ୍ସାଳୟରେ ଚକ୍ଷୁରୋଗ ବିଶେଷଜ୍ଞ ଭାବରେ ଅବସ୍ଥାପିତ । ଅଭିନୟ କରିବା ଏବଂ ନାଟ୍ୟ ନିର୍ଦ୍ଦେଶନା ଦେବାରେ ବିଶେଷ ଆଗ୍ରହ । ଆକାଶବାଣୀ, କଟକ ଏବଂ ଦୂରଦର୍ଶନ, ଭୁବନେଶ୍ୱରର ଅଭିନେତା । ସାହିତ୍ୟ କ୍ଷେତ୍ରରେ ଗଳ୍ପ ଏବଂ କବିତାରେ ବିଶେଷ ଆଗ୍ରହ ଓ ପାରଦର୍ଶିତା । ବହୁ ଗଳ୍ପ ଓ କବିତା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଚକ୍ଷୁ ଚିକିତ୍ସା, ସାହିତ୍ୟ, ଅଭିନୟ ଓ ସମାଜସେବା ପାଇଁ ବିଭିନ୍ନ ଅନୁଷ୍ଠାନ ତରଫରୁ ବହୁବାର ସମ୍ମାନୀତ । ଯାଜପୁରରେ ବିଭିନ୍ନ ସାହିତ୍ୟ ସଂସ୍କୃତି ଏବଂ ସେବା ଅନୁଷ୍ଠାନ ଯଥା ''ସ୍ୱର ଓ ସ୍ୱାକ୍ଷର'', 'ଅଭିମନ୍ୟୁ ସାଂସ୍କୃତିକ ପରିଷଦ'', ''ଅଫିସର୍ସ କ୍ଲବ୍'', ''ରୋଟାରୀ କ୍ଲବ୍'', ''ଚେତନା'' ଆଦିର ସଭାପତି କିମ୍ବା ସମ୍ପାଦକ ଭାବରେ ଅବସ୍ଥାପିତ । ଜଣେ ସରଳ, ମେଳାପି, ମିଷ୍ଟଭାଷୀ, ପରୋପକାରୀ ଏବଂ ଅନୁଷ୍ଠାନ ପ୍ରେମୀ ଭାବରେ ସୁପରିଚିତ ।

*- ପ୍ରକାଶକ*